# ମଣିଷ କଣ ନକରି ପାରେ

---

ଲେଖକ :

ଶ୍ରୀ କିଶୋର ଚନ୍ଦ୍ର ଦାସ

ଏମ୍. ଏ. ଉଇନ୍‌କନ୍‌ସିନ୍ (ଆମେରିକା)

ଅଧ୍ୟାପକ—ରାଧାନାଥ ଟ୍ରେନିଂ କଲେଜ

ଓ

ଶ୍ରୀ ଭାଗବତ ପ୍ରସାଦ ମହାନ୍ତି

ଶିକ୍ଷକ, ପି. ଏମ୍. ଏକାଡେମୀ

ପ୍ରକାଶକ :

ଜେ. ମହାପାତ୍ର ଏଣ୍ଡ କୋ.

କଟକ-୨

ମୂଲ୍ୟ ଟ ୨-୫୦

# ସୂଚୀ

ବିଷୟ | ପୃଷ୍ଠା

# ପଦେ ଅଧେ

ସାର୍ଦ୍ଧ ଦୁଇଶହ ବର୍ଷ ପୂର୍ବରୁ ମଣିଷ ଯାହାକୁ କଳ୍ପନା କରିପାରୁ ନ ଥିଲା, ଆଜି ତାହା ବାସ୍ତବ ରୂପରେ ଦେଖିବାକୁ ପାଇଲା । ମଣିଷ ଆଜି ବିଜ୍ଞାନ ବଳରେ ବଳୀୟାନ ହୋଇ ପ୍ରକୃତିକୁ କରଗତ କରିବା ପାଇଁ ତାହା ବିରୁଦ୍ଧରେ ଅବିରାମ ସଂଗ୍ରାମ ଚଳାଇଛି । ଯେଉଁ ମନୁଷ୍ୟ ପ୍ରଥମେ କଥା କହିବା ଶିଖି ନ ଥିଲା, ଲୁଗା ପିନ୍ଧି ଜାଣି ନ ଥିଲା, ମୁଣ୍ଡ ଗୁଞ୍ଜିବାକୁ ବାସ ଖଣ୍ଡିଏ କରିପାରୁ ନ ଥିଲା ସେ ଯେ ଆଜି ଚନ୍ଦ୍ରଲୋକକୁ ବାଟ ଫିଟାଇବ, ଏକଥା ଜାଣିଥିଲା ବା କିଏ ? ଆଜି ସେହି ମଣିଷ ତା'ର ପ୍ରକୃତିଗତ ଯୁକ୍ତି ବଳରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଜୟ କରି ପାରିଛି ।

ଅତି ଆଶ୍ଚର୍ଯ୍ୟର ବିଷୟ, ବିଜ୍ଞାନ ବଳରେ ମଣିଷ ଆମ ସମ୍ମୁଖରେ ଆମର ଅତ୍ୟାବଶ୍ୟକୀୟ ଶ୍ରେଷ୍ଠ ବଡ଼ ଧରଣର ଯନ୍ତ୍ରପାତି ସବୁ ଗଢ଼ି ଥୋଇ ଦେଇ ପାରିଲା । ମହାଶୂନ୍ୟରେ ସେ ଉଡ଼ିବୁଲିଲା । ଅତଳ ସାଗର ଗର୍ଭକୁ ବାଟ କାଟିଲା । ବିଜୁଳି ଆଲୁଅ ଉଦ୍ଭାବନ କଲା । ହିମାଳୟ ଭଳି ଗିରିକୁ ଲଙ୍ଘିଲା । ଭୂଗର୍ଭରୁ ଅମୂଲ୍ୟ ପଦାର୍ଥ ଉଦ୍ଧାର କଲା । ଅସଂଖ୍ୟ ଜୀବାଣୁର ଯମ ମଧ୍ୟ ସୃଷ୍ଟି କଲା । ଅନ୍ଧାରି ମୂଲକର ସନ୍ଧାନ ପାଇଲା । ଆଉ ମଧ୍ୟ ଭୀଷଣ ମାରାତ୍ମକ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତ କରି ଶତ୍ରୁର ଶକ୍ତିକୁ ପ୍ରତିହତ କଲା । ଅଉ ରହିଲା ବା କଣ ଯେ ଯାହାକୁ ସେ ଅକତିଆର କରି ନ ପାରିଛି ।

କେବଳ ଗୋଟିଏ ବିଷୟ ବାକୀ ରହୁଛି ଯେ ମଣିଷକୁ ଜୀବନଦାନ ଦେବ । ସେ ବାବଦରେ ମଧ୍ୟ ମଣିଷ ଆଜି ନିଶ୍ଚିନ୍ତ ଭାବେ ନ ବସି ଅବିଶ୍ରାନ୍ତ ଭାବରେ ପରୀକ୍ଷା ଚଳାଇଛି, ତାର ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ । ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ଆମକୁ ଅପେକ୍ଷା କରିବାକୁ ପଡ଼ିବ । ଏପରି ସମୟ ଆସିବ, ମଣିଷ ଏ ବାବଦରେ ନିଶ୍ଚୟ ଦିନେ ନା ଦିନେ କୃତକାର୍ଯ୍ୟ ହେବ ।

ମଣିଷ ସାଧାରଣତଃ ଅନୁସନ୍ଧିତ୍ସୁ । ଆଜିର ମଣିଷ ତା'ର ବୁଦ୍ଧି, ବିବେକ, ଜ୍ଞାନଲିପ୍ସା, ଅସୀମ ସାହସ ତଥା ଧୈର୍ଯ୍ୟର ସହ ଅତି ଅସମ୍ଭବ କଥାକୁ ସମ୍ଭବରେ ପରିଣତ କରିପାରିଛି । ଏବଂ ବିଶ୍ୱ ଦରବାରରେ ସେ ଖ୍ୟାତି ଅର୍ଜ୍ଜନ କରିବା ସଙ୍ଗେ ସଙ୍ଗେ ଦେଶ ତଥା ଜାତିର କଲ୍ୟାଣ ସାଧନ କରୁଛି, ଏହା ନିଶ୍ଚିତ କଥା ।

ଏଭଳି ଆଶ୍ଚର୍ଯ୍ୟଜନକ ବିଷୟଗୁଡ଼ିକୁ ଉଦ୍ଭାବନ କରିବା ମଣିଷ ପକ୍ଷେ କିପରି ଯେ ସମ୍ଭବ ହେଲ, ଏହି ଉକ୍ତିର ଯଥାର୍ଥତା ଉପରେ ପ୍ରମାଣ କରିବାକୁ ଯାଇ ସାମାନ୍ୟ କେତୋଟି ବିଷୟର ସହାୟରେ ଏହି କ୍ଷୁଦ୍ର ପୁସ୍ତକଟିର ସମାବେଶ "ମଣିଷ କଣ ନ କରି ପାରେ" । ଆଶା ଓ ବିଶ୍ୱାସ ଏହା ଦେଶର ପ୍ରତ୍ୟେକ ଯୁବକଙ୍କର ଭବିଷ୍ୟତ ସୁ-ନାଗରିକ ଗଠନ କରିବା ଦିଗରେ ଉତ୍ସାହ ଏବଂ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ନିଶ୍ଚିତ-ଭାବେ ଅନୁପ୍ରାଣିତ କରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ବିନୀତ

ଲେଖକ





# ଅଣୁବୀକ୍ଷଣର ଜନ୍ମଦାତା

ଦିନକୁ ଦିନ ବିଜ୍ଞାନ ଦିଗରେ ଏ ଦୁନିଆଁ ଆଗେଇ ଚାଲିଛି । ଦୂର ଦ୍ରଷ୍ଟା ବୈଜ୍ଞାନିକମାନେ କଠୋର ସାଧନା ଓ ଗବେଷଣା ଫଳରେ ଆମ ଆଖି ଆଗରେ ଭିନ୍ନ ଭିନ୍ନ ଆଧୁନିକ ବିଜ୍ଞାନ ସମ୍ବନ୍ଧୀୟ ଯନ୍ତ୍ରପାତି ଉଦ୍ଭାବନ କରି ଥୋଇଦେଇ ପାରୁଛନ୍ତି । ଆଜିସୁଦ୍ଧା ଯେତେଗୁଡ଼ିଏ ଯନ୍ତ୍ରପାତିର ଉଦ୍ଭାବନ ହେଲାଣି, ତାହାର ହିସାବ ବା ରଖିଛି କିଏ ? ଆମେ କେବଳ ତାକୁ ବ୍ୟବହାରରେ ଲଗାଉଥାଉ ସତ; ମାତ୍ର ତାହା ପ୍ରଥମେ କିପରି ଓ କାହାଦ୍ୱାରା ଏ ଦୁନିଆକୁ ଆସିଲା ବୋଲି ଯଦି ଆମକୁ କେହି ପଚାରେ ତେବେ ତାହାର ଉତ୍ତର ଦେବାରେ ଆମେ ଅସମର୍ଥ ହେଉ । ଯାହା ବିଷୟରେ ଆମେ ଟିକିଏ ହେଲେ କିଛି ଜାଣିପାରୁ ନାହିଁ, କିନ୍ତୁ ତାକୁ ଯେଉଁ ବ୍ୟକ୍ତି ଉଦ୍ଭାବନ କଲେ ସେ ଯେ ଆମଠାରୁ କେତେ ଜ୍ଞାନୀ ଏବଂ କେତେଦୂର ତାଙ୍କର କଠୋର ଅଧ୍ୟବସାୟ ତାହା ପଢ଼ିଲେ ଆଶ୍ଚର୍ଯ୍ୟ ଲାଗିବ ।

ଗୋଟିଏ ସାମାନ୍ୟ କଥା ବିଚାରକୁ ଅଣାଯାଉ । ଖାଲି ଆଖିରେ ଅତି କ୍ଷୁଦ୍ର ଜୀବାଣୁଗୁଡ଼ିକ ବହିର୍ଜଗତରେ ଉଡ଼ିବୁଲିବାର ଆମେ ଦେଖି-ପାରୁ ନାହିଁ । ମାତ୍ର ଏଭଳି ଗୋଟିଏ ଯନ୍ତ୍ର ଅଛି ତାକୁ ଆଖିରେ

ଦେବାମାତ୍ରେ ଆମେ ଅତି ଅଣୁ-ସଦୃଶ କୀଟପତଙ୍ଗଙ୍କୁ ଖୁବ୍ ବଡ଼ ଆକାରରେ ଦେଖିବାକୁ ପାଉ । ତାହାର ନାମ ହେଉଛି 'ଅଣୁବୀକ୍ଷଣ ଯନ୍ତ୍ର' । ଏହି ଅଣୁବୀକ୍ଷଣ ଯନ୍ତ୍ର କିପରି ଉଦ୍ଭାବନ ହେଲା ଜାଣିଛ କି ?

୧୭୨୩ ମସିହାର ଘଟଣା । ଆଜକୁ ପ୍ରାୟ ଦୁଇଶହ ତେପ୍ରାଳିଶ ବର୍ଷ ବିତିଗଲାଣି । ଏକଦିନର ସନ୍ଧ୍ୟାସମୟ । ଶଯ୍ୟା ପାଖରେ ବସିଛନ୍ତି ଆଦରର ଓ ସ୍ନେହମୟୀ କନ୍ୟା ମେରିୟା ଏବଂ ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ହୁଗ୍‌ଭନ୍‌ଏଠ୍ । ଏ ଦୁହିଁଙ୍କ ବ୍ୟତୀତ ଅନ୍ୟ କେହି ସେଠାରେ



ନାହାନ୍ତି । ହଠାତ୍ ନିଜ ବନ୍ଧୁଙ୍କୁ ଠାରି ପାଖକୁ ଡାକିଲେ ଏବଂ ଅସ୍ପଷ୍ଟ ସ୍ୱରରେ ଇଙ୍ଗିତ ଦେଇ କହିଲେ, "ମୋର ଏହି ଲେଖା ଦୁଇଟିକୁ ଲାଟିନ୍‌ରେ ଅନୁବାଦ କରି ପଠାଇ ଦେବ ସେଠାକୁ ।" ୯୧ ବୟସର ବୃଦ୍ଧ ବୈଜ୍ଞାନିକ ଆଣ୍ଟୋନି ରୋଗ ଶଯ୍ୟାରେ ପଡ଼ିଥିବା ଅବସ୍ଥାରେ ଏତିକି କହି ଚିରଦିନ ପାଇଁ ବିଦାୟ ନେଲେ ।

ପୃଥିବୀ ତାଙ୍କ ଭଳି ଜଣେ ଖ୍ୟାତନାମା ବୈଜ୍ଞାନିକଙ୍କୁ ହରାଇଲା ବୋଲି ଆମକୁ ଜାଣିବାକୁ ହେବ । 'ଆଣ୍ଟୋନିଲିଉ ଏନ୍‌ହକ୍' ତାଙ୍କର ପୂରା ନାମ । ଆଣ୍ଟୋନି ଜଣେ ବୈଜ୍ଞାନିକ ସତ, ମାତ୍ର କେବଳ ବୈଜ୍ଞାନିକ ହିସାବରେ ଯଦି ତାଙ୍କୁ ପରିଚୟ ଦିଆଯାଏ, ତେବେ ଆମେ ଭୁଲ୍ କଲୁ

ବୋଲି କହିବାକୁ ପଡ଼ିବ । ଆଜିକାଲିର ବିଜ୍ଞାନାଗାର ଯେଉଁଳି ଆମେ ଦେଖୁଥାଉ, ଆଣ୍ଟୋନି ତାଙ୍କ ଜୀବନରେ ଏଭଳି ବିଜ୍ଞାନାଗାର ମାଡ଼ିବା ଦୂରରେ ଥାଉ ସେ ଆଖିରେ ଦେଖିବାକୁ ମଧ୍ୟ ପାଇ ନ ଥିଲେ । ତାଙ୍କର ପ୍ରଧାନ ପନ୍ଥା ଥିଲା ଗୋଟିଏ ଛୋଟ ଭୂସାମାଲ ଦୋକାନରେ ବସି କରିବା । ତା'ଛଡ଼ା ଗୋଟିଏ ଟାଉନହଲର ରକ୍ଷଣାବେକ୍ଷଣ କରିବା ତାଙ୍କର ଅନ୍ୟ ଏକ ଉପପନ୍ଥା ଥିଲା । ପାଠ ପଢ଼ିବା ଭିତରେ ସେ ଡଚ୍ ଭାଷା ଛଡ଼ା ଲାଟିନ୍ ଭାଷା ଆଦୌ ଜାଣି ନ ଥିଲେ । ଯେଉଁ ଗୃହଟିରେ ସେ ରହୁଥିଲେ ତାହାକୁ ସେ ବିଜ୍ଞାନାଗାର କରିଥିଲେ । ବୈଜ୍ଞାନିକ ମାନଙ୍କର ସବୁଠାରୁ ବଶିଷ୍ଟ ଗୁଣ "ଜ୍ଞାନଲିପ୍ସା" ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ନିହିତ ଥିଲା । ଆଉ ଗୋଟିଏ ଗୁଣ ଥିଲା, ସେ କୌଣସି ବିଷୟକୁ ଆଖିରେ ନ ଦେଖିବା ପର୍ଯ୍ୟନ୍ତ ତାକୁ ବିଶ୍ୱାସ କରୁ ନ ଥିଲେ ।

ଆଜି ସେହି ବୈଜ୍ଞାନିକ ଆଣ୍ଟୋନିଙ୍କୁ ଆମେ ପୁରାପୁରି ଭୁଲିଗଲୁଣି । ଭେଷଜ ବିଦ୍ୟାର ତଥା ପ୍ରାଣୀବିଜ୍ଞାନର ଛାତ୍ରଛାତ୍ରୀ ଯେତେବେଳେ କର୍ମରତ ହୁଅନ୍ତି, ତାଙ୍କ ସମ୍ମୁଖରେ ଦେଖିବାକୁ ମିଳେ ଅଣୁବୀକ୍ଷଣ ଯନ୍ତ୍ର । ସେହି ଯନ୍ତ୍ରଟିର ଜନ୍ମ ସାହାଯ୍ୟରେ ସେମାନେ କିଛି ଜାଣି ପାରିବେ ନାହିଁ । ଆଉ ମଧ୍ୟ ତାଙ୍କ ସମ୍ମୁଖରେ ଥାଏ ସଂଗ୍ରହ ହୋଇଥିବା ଜୀବନ୍ତ ଅନ୍ୟ କେତେକ ଛୋଟ ଛୋଟ ଜୀବାଣୁ । କାର୍ଯ୍ୟରତ ରହି ବୈଜ୍ଞାନିକମାନେ ଅଣୁବୀକ୍ଷଣ ଯନ୍ତ୍ରର ପ୍ରଥମ ଉଦ୍ଭାବକ ଏବଂ ଜୀବାଣୁ ଜଗତର ପ୍ରଥମ ସୂଚକ 'ଆଣ୍ଟୋନି'ଙ୍କୁ ଭୁଲିଯାଆନ୍ତି ।

ପ୍ରଥମରୁ କେବଳ ତାଙ୍କ ହସ୍ତନିର୍ମିତ କାଚର ଲେନ୍ସ କେତେଖଣ୍ଡି ଥିଲା । ଏହି କାଚ ଲେନ୍ସ ଦ୍ୱାରା ଲମ୍ବା ଲମ୍ବା ଲୁହା ନଳୀର ସାହାଯ୍ୟ ନେଇ ସେ ପ୍ରଥମେ ଛୋଟ ଛୋଟ ଜୀବାଣୁ ଗୁଡ଼ିକୁ ଦେଖିପାରିଲେ । ପ୍ରଥମେ ସେ କହିଥିଲେ ଯେ, 'ଟୋପାଏ ପାଣି ମଧ୍ୟରେ ଲକ୍ଷ ଲକ୍ଷ ଜୀବାଣୁ ରହିପାରିବେ' । କଥା ପଦେ କହିବା ତାଙ୍କ ପକ୍ଷେ ଘୋର କଷ୍ଟ । କାମ ତ ସବୁବେଳେ ଚାଲିଥାଏ । ଥରକୁଥର ପରୀକ୍ଷା କରି ନିଜେ ଯେତେବେଳେ ସନ୍ତୁଷ୍ଟ ହୁଅନ୍ତି ସେତେବେଳେ ତାଙ୍କ ମୁହଁରୁ ପଦେ କଥା ବାହାରେ ।

ସେ କାଳର ଲୋକଙ୍କ ମନରେ ଏକ ଅନ୍ଧ ବିଶ୍ୱାସ ଥିଲା । ଲୋକମାନଙ୍କ ଧାରଣା ଓ ବିଶ୍ୱାସ ଥିଲା ଯେ, ମାତ୍ର ୬ଟି ଦିନ ମଧ୍ୟରେ ଈଶ୍ୱର ଏହି ଜଗତକୁ ସୃଷ୍ଟି କରିଛନ୍ତି ଏବଂ ତାହାଙ୍କ ଉପରେ ଦୋଷ ଗୁଣର ବିଚାର ଏବଂ ଭାଗ୍ୟ ନିୟନ୍ତ୍ରଣ ସବୁକିଛି ନିର୍ଭର କରେ । କିନ୍ତୁ ଆଣ୍ଟୋନିଙ୍କର ଏ ବିଷୟରେ ଦ୍ୱିଧାମତ ହେଲା । ଏହି କାରଣରୁ ସେ ଛୋଟ ଛୋଟ ଜୀବ ଜୀବାଣୁଙ୍କର ସୃଷ୍ଟି କିପରି ହେଉଛି ସେ ବିଷୟରେ ଗଭୀର ଚିନ୍ତା କରିବାକୁ ଲାଗିଲେ । ପ୍ରଥମ ଅବସ୍ଥାରେ ବର୍ଷାପାଣିରେ ଜୀବାଣୁ ନ ଥାନ୍ତି ଏବଂ ପରେ ତାହା ପରିବେଷ୍ଟନୀ ମଧ୍ୟରୁ ଜନ୍ମ ହୁଅନ୍ତି ବୋଲି ସେ ପ୍ରମାଣ କଲେ । ଏହି ସାଧାରଣ ପରୀକ୍ଷା ନିମିତ୍ତ ତାଙ୍କୁ ବିଭିନ୍ନ ସ୍ଥାନରୁ ବହୁ କଷ୍ଟ ସ୍ୱୀକାର ପୂର୍ବକ ଭିନ୍ନ ଭିନ୍ନ ଉପାୟରେ ପରିଷ୍କାର ପାତ୍ରରେ ଜଳସଂଗ୍ରହ କରିବାକୁ ପଡୁଥିଲା ।

ତାଙ୍କର ପ୍ରଥମ ପରୀକ୍ଷା ହେଲା ନିଜର ହସ୍ତ ନିର୍ମିତ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସୁଚିନ୍ତିତ ଧାରଣା ଆଣିବା ପାଇଁ ମଶା ଏବଂ ମାଛିର ଖଣ୍ଡ ବିଖଣ୍ଡ ଅଂଶର ପର୍ଯ୍ୟବେକ୍ଷଣ ଓ ଜୀବଜନ୍ତୁଙ୍କ ସମ୍ବନ୍ଧରେ ସଠିକ୍ ବିବରଣୀ ଜାଣିବା ପାଇଁ ସେ ବିଷୟରେ ଅଧିକ ଚର୍ଚ୍ଚା । ବିଗତ ୨୦ ବର୍ଷର ସାଧନା ପରେ ଆଣ୍ଟୋନିଙ୍କର ଉଦ୍ଭାବନ ହେଲା କେତେ ଖଣ୍ଡ ଯବ କାଚ । ସେହି କାଚ ସାହାଯ୍ୟରେ କେତୋଟି ଜୀବନର ପ୍ରକୃତ ବିବରଣୀ ମିଳିଲା ।

ସଦା ସର୍ବଦା ଆଣ୍ଟୋନି ଏହି ଗବେଷଣା କାର୍ଯ୍ୟରେ ରତ ରହିବା ଫଳରେ ଲୋକେ ତାଙ୍କୁ ଅନେକ ପରିହାସ କଲେ । ସେ ଏ ସବୁ କଥା ଉପରେ ଆଦୌ ଭ୍ରୂକ୍ଷେପ କରନ୍ତି ନାହିଁ । ବରଂ ତାଙ୍କର ନିଜ କାର୍ଯ୍ୟ ଉପରେ ଆସ୍ଥା ଓ ଆଶା ରଖି ଆନନ୍ଦର ସହିତ ମନୋନିବେଶ କରିଥାନ୍ତି ।

ତାଙ୍କର ଏକମାତ୍ର ବନ୍ଧୁ ରେଜନାଲ୍ଡ଼ ଗ୍ରାଫ୍ ଥିଲେ ଖୁବ ଆତ୍ମୀୟ । ତାଙ୍କର ଚେଷ୍ଟା ଫଳରେ ଆଣ୍ଟୋନିଙ୍କର ଗୁଣ ଗୁଡ଼ିକ ବହିର୍ଜଗତରେ ପ୍ରକାଶ ପାଇଲା । ତା ପରେ ନିଉଟନ୍ ଓ

ରବର୍ଟବୟେଲଙ୍କର ତାଙ୍କ ସହିତ ପରିଚୟ ହେଲା । ବୈଜ୍ଞାନିକ 'ରବର୍ଟ ହୁକ' ଏବଂ 'ଗ୍ରୁ' ଦୁହେଁ କେତେକ ବିଷୟର ସତ୍ୟତା ଜାଣିବା ପାଇଁ ତାଙ୍କ ନିକଟରେ ପରୀକ୍ଷା ମଧ୍ୟ କରିଥିଲେ । ଆଣ୍ଟୋନିଙ୍କର ଉଦ୍ଭାବନ ହୋଇଥିବା ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ କେତେକ ବସ୍ତୁକୁ ଠିକ ନିଖ ପରୀକ୍ଷା କରି ସେମାନେ ଦେଖିଲେ ଯେ ତାଙ୍କ ବିବରଣୀ ସହିତ ପୁରାପୁରି ଖାପ ଖାଉଛି ।

କିଛି ଦିନ ପରେ ବୈଜ୍ଞାନିକ ଆଣ୍ଟୋନି ରୟାଲ ସୋସାଇଟି ସଂସ୍ପର୍ଶରେ ଆସିଲେ । ସୋସାଇଟି ସହିତ ଚିଠି ପତ୍ର ଆଦାନ ପ୍ରଦାନ ହେବା ଫଳରେ ତାଙ୍କ ସହିତ ଖୁବ୍ ଭଲ ସମ୍ବନ୍ଧ ଲାଗିଲା । ୫୦ ବର୍ଷ ଧରି ଦୈନନ୍ଦିନ ଚିଠି ଲେଖାରୁ ସୋସାଇଟି ସଭ୍ୟମାନଙ୍କର ଆବଶ୍ୟକ ତଥ୍ୟମାନ ଜାଣିବାରେ କିଛି ଅସୁବିଧା ଘଟି ନ ଥିଲା । ସେହି ସୋସାଇଟିର ଡାକ୍ତର ମଲିନିଉକ୍ସଙ୍କୁ କେତେକ ଗବେଷଣା ନିମିତ୍ତ ଡେନମାର୍କ ପଠାଗଲା । ଏବଂ ସେହି ସୋସାଇଟିରେ ଆଣ୍ଟୋନିଙ୍କୁ ସଭ୍ୟ ପଦରେ ନିଯୁକ୍ତ କରାଗଲା । ଆଣ୍ଟୋନି ସୋସାଇଟିର ବହୁ ଉନ୍ନତି ମୂଳକ କାର୍ଯ୍ୟ କରି ପ୍ରଶଂସା ଭାଜନ ହୋଇଥିଲେ ।

ସେହି ସମୟର କଥା । ରକ୍ତ ସଞ୍ଚଳନ ସମ୍ବନ୍ଧରେ ବୈଜ୍ଞାନିକ ହାର୍ଭେ ତାଙ୍କର ଏକ ତତ୍ତ୍ୱ ପ୍ରକାଶ କରିଥିଲେ । ଏହି ତତ୍ତ୍ୱକୁ ଆଣ୍ଟୋନି ସମ୍ପୂର୍ଣ୍ଣ ପ୍ରମାଣ କରି ପାରିଥିଲେ ।

ଗୋଟିଏ ଶ୍ଳେଟ ମାଛ ଲାଞ୍ଜକୁ ଅଣୁବୀକ୍ଷଣ ଯନ୍ତ୍ର କାଚ ତଳେ ରଖି ଆଣ୍ଟୋନି ଦେଖାଇ ଦେଲେ ଯେ ଲାଞ୍ଜ ମଧ୍ୟରେ ଶିରପ୍ରଶିରା ମଧ୍ୟକୁ କ୍ୟାପିଲାରି ମଧ୍ୟ ଦେଇ ରକ୍ତ ସଂଚାଳନ ଚାଲିଛି । ଜୀବାଣୁ ସମ୍ବନ୍ଧରେ ନିର୍ଭୁଲ ତଥ୍ୟ ସଂଗ୍ରହ କରି ଜଗତ ସମ୍ମୁଖରେ ପରିବେଷଣ କରିବା ତାଙ୍କର ଅନ୍ୟ ଏକ ଅବଦାନ । ଅତି ଆଶ୍ଚର୍ଯ୍ୟର ବିଷୟ ଯେ ଜୀବାଣୁମାନଙ୍କର ଆବିର୍ଭାବ କିପରି ହୁଏ, ସେ ବିଷୟରେ ମଧ୍ୟ ଆଣ୍ଟୋନି ତଥ୍ୟ ପ୍ରକାଶ କରିଛନ୍ତି ସେଥିରେ ତାଙ୍କର ଆତ୍ମଗରିମା ବିଷୟ ଉଲ୍ଲେଖ ନାହିଁ ।

ଆମେ ଆଜି ଜୀବାଣୁ ସମ୍ବନ୍ଧରେ ଅନେକ କଥା ଜାଣିଲୁଣି । ବୈଜ୍ଞାନିକ ଆଣ୍ଟୋନିଙ୍କର ତଥ୍ୟକୁ ମୂଳ ଭିତ୍ତି କରି କଚ୍ ପାଷ୍ଟର ଆଦି ବୈଜ୍ଞାନିକମାନେ ଯେଉଁ ନୂଆ ନୂଆ ବସ୍ତୁ ଉଦ୍ଭାବନ କରି ପାରିଛନ୍ତି ସେଥିପାଇଁ ସେ ଆମର ଆଜି ନମସ୍ୟ । ଆମକୁ ମନେ ରଖିବାକୁ ହେବ ଯେ ଆଣ୍ଟୋନି ଏ ବିଷୟର ପ୍ରଥମ ସ୍ରଷ୍ଟା । ତାଙ୍କର ବିଜ୍ଞାନ ଜଗତକୁ ଦାନ ଅତୁଳନୀୟ । ତାଙ୍କ ଜୀବନକାଳ ମଧ୍ୟରେ ଯାହା ସବୁ ସେ ଲେଖିଛନ୍ତି, ତାହା ପ୍ରତ୍ୟେକ ବିଜ୍ଞାନ ପ୍ରେମୀମାନଙ୍କୁ ଉତ୍ସାହ ଓ ପ୍ରେରଣା ଦେବ— ଏଥିରେ ସନ୍ଦେହର ଅବକାଶ ନାହିଁ । ଆଜି ଆଣ୍ଟୋନି ଇହଜଗତରେ ନାହାନ୍ତି ସତ; ମାତ୍ର ତାଙ୍କର ଏକାଗ୍ରତା, ପ୍ରେରଣା, ଅଧ୍ୟବସାୟ ଓ କର୍ମନିଷ୍ଠା ତାଙ୍କୁ ସାରା ପୃଥିବୀରେ ଅମର କରି ରଖିବ ।

———




ଅତି ପୂର୍ବକାଳରେ ବଜୁଳିଶକ୍ତି କଥା ଶୁଣିବା ମାତ୍ରେ ଲୋକେ ଚମକି ପଡ଼ୁଥିଲେ । ବଜୁଳିଶକ୍ତି ଏକ ଦୈବବାଣ ବୋଲି ପ୍ରାୟ ସମସ୍ତଙ୍କର ଧାରଣା ଥିଲା । ମାତ୍ର ଆଜି ବଜୁଳିଶକ୍ତି ମନୁଷ୍ୟର ଆଜ୍ଞାକାରୀ ହୋଇଅଛି । ଆମର ଦୈନନ୍ଦିନ ଜୀବନରେ ବିଦ୍ୟୁତ୍-ଶକ୍ତି ଅତ୍ୟନ୍ତ ଉପକାର ସାଧନ କରିପାରୁଛି । ଏହି ବିଦ୍ୟୁତ୍-ଶକ୍ତି ବଳରେ ବିଭିନ୍ନ ପ୍ରକାର କଳକାରଖାନା ଚାଲୁଛି ଏବଂ ଆମେ ତାହାଦ୍ୱାରା ଆବଶ୍ୟକୀୟ ପ୍ରତ୍ୟେକ ବ୍ୟବହାର୍ଯ୍ୟ ଜିନିଷ ପାଇ ପାରୁଛୁ । ଏହାଦ୍ୱାରା ଆମର ଯାତାୟାତରେ ସୁବିଧା ହୋଇ ପାରୁଛି । ତା ଛଡ଼ା କଥା କହିବାରେ, ଖାଇବା ପିଇବାରେ ଓ ଶୋଇବା ବସିବା ସମୟରେ ମଧ୍ୟ ବିଦ୍ୟୁତ୍ ଶକ୍ତି ଆମକୁ ସାହାଯ୍ୟ କରୁଛି । ଆହୁରି ମଧ୍ୟ ଅସଂଖ୍ୟ ଯନ୍ତ୍ରପାତି ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ ପ୍ରସ୍ତୁତ ହେଉଛି ଏବଂ ତାହା ଆମର ସଦାସର୍ବଦା କାର୍ଯ୍ୟରେ ଲାଗି ପାରୁଛି ।

ଯେଉଁ ବିଦ୍ୟୁତ୍‌ଶକ୍ତି ଆଜିକାଲି ମନୁଷ୍ୟର ଏତେଗୁଡ଼ିଏ ଉପକାର ସାଧନ କରିପାରୁଛି, ସେହି ବିଦ୍ୟୁତ୍‌ଶକ୍ତି କ'ଣ ଓ ତାକୁ

ଆରମ୍ଭ କରିବା ସଙ୍ଗେ ସଙ୍ଗେ କିପରି ଜନମଙ୍ଗଳ କାର୍ଯ୍ୟରେ ବିନିଯୋଗ କରାଯାଇ ପାରିବ ଏହାହିଁ ଚିନ୍ତାର ବିଷୟ, ଏଥିପାଇଁ କାଳ କାଳ ଧରି ବୈଜ୍ଞାନିକମାନେ ଅକ୍ଲାନ୍ତ ଉଦ୍ୟମ କରି ଆସିଛନ୍ତି ।

ଯେଉଁ ବୈଜ୍ଞାନିକମାନେ ଏହି କଠୋର ସାଧନାର ବ୍ରତୀ ଥିଲେ ସେମାନଙ୍କ ମଧ୍ୟରେ ଲୁଇଗାଲ୍‌ଭାନି ଅନ୍ୟତମ ।

ଇଟାଲି ଦେଶ ଅନ୍ତର୍ଗତ ବୋଲନାଠାରେ ମହାମାନ୍ୟ ବୈଜ୍ଞାନିକ ଲୁଇଗାଲ୍‌ଭାନି ୧୭୩୭ ମସିହାରେ ଜନ୍ମଲାଭ କରିଥିଲେ । ଶୈଶବ ଅବସ୍ଥାରେ ଧର୍ମଆଡ଼କୁ ତାଙ୍କର ମନ ଥିଲା । ସେ ଜଣେ ଧର୍ମଯାଜକ ହେବାକୁ ପ୍ରବଳ ଇଚ୍ଛା କରିଥିଲେ । ଏ ବିଷୟ ତାଙ୍କର ପିତାମାତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ସେମାନେ ଭାବିଲେ ଗାଲ୍‌ଭାନିଙ୍କୁ ଡାକ୍ତରୀ ପାଠ ପଢ଼ାଇଲେ ସେ ଧନ ରୋଜଗାର କରିବ ଏବଂ ପ୍ରକାରାନ୍ତରେ ଲୋକମାନଙ୍କ ସେବା କାର୍ଯ୍ୟ ମଧ୍ୟ ହୋଇ ପାରିବ । ଏହା ଠିକ୍ କରି ଗାଲ୍‌ଭାନିଙ୍କୁ ଡାକ୍ତରୀ ପଢ଼ାଇଲେ । ଯୁବକ ବୈଜ୍ଞାନିକ ଗାଲ୍‌ଭାନି ଆନାଟୋମୀ ବିଦ୍ୟାରେ ବିଶେଷ ଧୁରନ୍ଧର ଥିଲେ । ସେ ସେଥିରେ ଅଧିକ ଜ୍ଞାନ ଅର୍ଜନ କରି କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ । ତା'ପରେ ପ୍ରସିଦ୍ଧ ବୋଲନା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ରୂପେ ଯୋଗ ଦେବାପାଇଁ ସେଠାରୁ ନିଯୁକ୍ତି ପାଇଲେ । ଏହି ବିଶ୍ୱବିଦ୍ୟାଳୟରେ [illegible] କରିବା ସମୟରେ ବିଖ୍ୟାତ ଆନାଟୋମୀଷ୍ଟ ରୂପେ ଖ୍ୟାତି ଅର୍ଜନ କଲେ । ଇତିମଧ୍ୟରେ ପକ୍ଷୀମାନଙ୍କର ଶ୍ରବଣେନ୍ଦ୍ରିୟ ଓ ମୂତ୍ରଯନ୍ତ୍ର ଇତ୍ୟାଦି ଅଙ୍ଗ-ପ୍ରତ୍ୟଙ୍ଗ ଉପରେ ଗଭୀର ଗବେଷଣା କରି ସେ ପ୍ରଶଂସାର ପାତ୍ର ହୋଇଥିଲେ । କିନ୍ତୁ ପିଲାଦିନରୁ ଗାଲ୍‌ଭାନି ବିଜୁଳି ଶକ୍ତିର ବ୍ୟବହାର ସମ୍ପର୍କରେ ଜାଣିବା ପାଇଁ ବିଶେଷ ଆଗ୍ରହୀ ଥିଲେ ।

ବିଦ୍ୟୁତ୍ ଶକ୍ତି ସମ୍ବନ୍ଧରେ ବୈଜ୍ଞାନିକ ଥେଲ୍‌ସିଙ୍କ ଲେଖାରୁ ଜଣାପଡ଼େ ଯେ ଏମ୍ବରକୁ ପଶମରେ ଘଷିଲେ କିଛି ସମୟ ପରେ ସେହି ଏମ୍ବର ଅତି ଛୋଟ ଛୋଟ ପଦାର୍ଥ ଗୁଡ଼ିକୁ

ଆକର୍ଷଣ କରିବ । ଥିଓପ୍ରେଷ୍ଟିସ୍ ଓ ପ୍ଲିନି ଏହି ଦୁଇ ଜଣ ବୈଜ୍ଞାନିକ ମଧ୍ୟ ଅନୁରୂପ ପରୀକ୍ଷା କରିଥିଲେ । ସମସ୍ତ ବୈଜ୍ଞାନିକମାନଙ୍କର ଗଭୀର ଗବେଷଣା ପରେ ଏକ ପ୍ରକାର ଫଳ ଲାଭ ହେଲା, "ପ୍ରଥମ ସ୍ପାର୍କ" । ଏହା ଏକ ଉତ୍ପାଦନକାରୀ ଯନ୍ତ୍ର । ୧୬୭୯ ଖ୍ରୀଷ୍ଟାବ୍ଦରେ ହାସକ୍ ବୋଲି ଜଣେ ବୈଜ୍ଞାନିକ ଏହିପରି ଏକ ଯନ୍ତ୍ର ମଧ୍ୟ ଉଦ୍ଭାବନ କରିଥିଲେ । କିଛି ବର୍ଷ ପରେ ଲେଡନ୍ ଜା'ର ଉଦ୍ଭାବନ ହେଲା । ଗୁଡ଼ି ଉଡ଼ାଇବା ତ ଆଜିକାଲି ପିଲାମାନଙ୍କର ଏକ ସାଧାରଣ ଖେଳ ହୋଇଛି । ଏହି ଗୁଡ଼ି ଉଡ଼ାଇବା ଫଳରେ କପରି ଅଭିଜ୍ଞତା ଅର୍ଜ୍ଜନ କରାଯାଇ ପାରିଛି, ତମେ କେବେ ଜାଣିଛ କି ? ବୈଜ୍ଞାନିକ ଫ୍ରାଙ୍କଲିନ୍ ମଧ୍ୟ ତାଙ୍କର ବିଖ୍ୟାତ ଗୁଡ଼ି ସାହାଯ୍ୟରେ ପରୀକ୍ଷା କରି ୧୭୫୨ ଖ୍ରୀ:ରେ ପୃଥିବୀରେ ଘୋଷଣା କଲେ ଯେ, ବିଜୁଳି ମାରିବା ଟା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏ ପ୍ରକାର ପରୀକ୍ଷା ଦ୍ୱାରା ବିଦ୍ୟୁତ୍ ସମ୍ବନ୍ଧରେ ଗବେଷଣା କରିବା ପାଇଁ ଗାଲ୍ଭାନିଙ୍କ ମନରେ ଆନ୍ଦୋଳନ ଓ ନୂତନ ପ୍ରେରଣା ସୃଷ୍ଟି ହେଲା । ଗାଲେଗ୍ରି ନାମକ ଜଣେ ଡାକ୍ତରଙ୍କ କନ୍ୟାକୁ ବୈଜ୍ଞାନିକ ଗାଲ୍ଭାନି ବାହା ହୋଇଥିଲେ । ଏହି ମହିଳା ଜଣକ ଖୁବ୍ ବୁଦ୍ଧିମତୀ ଥିଲେ । ତାଙ୍କର ମଧ୍ୟ ଖୁବ୍ ତୀକ୍ଷ୍ଣ ଦୃଷ୍ଟି ଥିଲା । ଗାଲ୍ଭାନି ତାଙ୍କ ସ୍ତ୍ରୀଙ୍କ ସାହାଯ୍ୟ ନେଇ ଅନେକ ଗବେଷଣା କରିଥିଲେ । ଫଳରେ ଗାଲ୍ଭାନିକମ୍ ର ଆବିଷ୍କାର ହେଲା ।

ଥରେ ଗାଲ୍ଭାନିଙ୍କ ଟେବୁଲ ଉପରେ ଗୋଟିଏ ବେଙ୍ଗର ଶିରଚ୍ଛେଦ କରାଯାଇ ରଖାଯାଇଥିଲା । ତାଙ୍କ ସ୍ତ୍ରୀ ପରୀକ୍ଷା ସ୍ୱରୂପ ଗୋଟିଏ ଛୁରୀ ସାହାଯ୍ୟରେ ବେଙ୍ଗକୁ ଛୁଇଁବା କ୍ଷଣି ଦେଖିଲେ ଯେ ବେଙ୍ଗଟି କ୍ରମେ ସଙ୍କୁଚିତ ହୋଇଯାଉଛି । ତା ପରେ ତାଙ୍କର ସ୍ୱାମୀ ଫେରିବାକ୍ଷଣି ଏ ବିଷୟ ତାଙ୍କୁ ଜଣାଇଲେ । ସେ ଖୁସି ହୋଇଗଲେ ଓ ସେହି ମୁହୂର୍ତ୍ତରେ ଗାଲ୍ଭାନିଙ୍କର ଗବେଷଣା ଚାଲିଲା ବେଙ୍ଗ ଉପରେ ।

ଥରେ ଗାଲ୍ଭାନି ପରୀକ୍ଷା କରିବାକୁ ଯାଇ, କେତେଗୁଡ଼ିଏ ବେଙ୍ଗକୁ ତମ୍ବାତାରରେ ବାନ୍ଧି ଦେଲେ । ତା ପରେ ଲୁହା ଛଡ଼ଥିବା

ଝରକାରେ ତାକୁ ଟଙ୍ଗାଇ ଦେଲେ । ବେଙ୍ଗର ଗୋଡ଼ ଲୁହା ସହିତ ସଂଯୋଗ ହୁଅନ୍ତେ ତାହା ସଂକୁଚିତ ହେଉଥିବାର ସେ ଲକ୍ଷ୍ୟ କଲେ ।



ତେଣୁ ଗାଲ୍‌ଭାନି ଚିନ୍ତା କଲେ ଯେ ବେଙ୍ଗ ମାଂସପେଶୀର ଏହି ସଞ୍ଚିତ ଏକ ପ୍ରକାର ବିଦ୍ୟୁତ୍‌ଶକ୍ତି ଯୋଗୁ ନିସ୍ପନ୍ଦିତ ହେଉଛି । ଗାଲ୍‌ଭାନି ଏ ପ୍ରକାର ବିଦ୍ୟୁତ୍ ଶକ୍ତିର ନାମ ରଖିଲେ ଜୈବିକ ବିଦ୍ୟୁତ୍ । ଏହି ପରୀକ୍ଷାରୁ ଫଳ ଲାଭ ହେଲା ଗାଲ୍‌ଭାନିଙ୍କ ବେଠାଗ୍ରୀ । ନିଜ ଦେଶରେ ଭୋଲ୍‌ଟାଙ୍କ ସହିତ ଗାଲ୍‌ଭାନି ମଧ୍ୟ ଅନେକ ପ୍ରକାର ପରୀକ୍ଷା କରିଥିଲେ । ଭୋଲ୍‌ଟା ଏହି ସମୟରେ ପାଭିଆର ଅଧ୍ୟାପକ । ଉଭୟଙ୍କ ଚେଷ୍ଟା ଏବଂ ଉଦ୍ୟମ ଫଳରେ ଭୋଲ୍‌ଟାଇକ ପାଇଲ୍ ଉଦ୍ଭାବନ ହେଲା । ଉଭୟେ ମଧ୍ୟ ଆହୁରି ଗବେଷଣା କରି ସ୍ଥିର କଲେ ଯେ ଦୁଇଟି ଭିନ୍ନ ପ୍ରକାର ଧାତୁରୁ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହୋଇ ପାରିବ ।

ବୈଜ୍ଞାନିକ ଗାଲ୍‌ଭାନି ତାଙ୍କର ଗବେଷଣା ମୂଳକ ବହି ଖଣ୍ଡିଏ ଛପାଇଲେ । ଏହା ଜନସାଧାରଣରେ ବିଶେଷ ସମାଦୃତ ହେଲା । ସେ

ବହୁ ବର୍ଷ ପର୍ଯ୍ୟନ୍ତ ଅଧ୍ୟାପକ କାର୍ଯ୍ୟରେ ବ୍ୟାପୃତ ରହି ଶାସ୍ତ୍ରରେ କାଳ ଯାପନ କରିବା ସଙ୍ଗେ ସଙ୍ଗେ ଗବେଷଣା କାର୍ଯ୍ୟରୁ ନିବୃତ୍ତ ହୋଇ ନ ଥିଲେ । ମାତ୍ର ଦୁଃଖର ବିଷୟ, ଏହି ଶାନ୍ତିର ବାତାବରଣ ବହୁତ ଅଧିକ ଦିନ ତାଙ୍କ ପକ୍ଷେ ଅନୁକୂଳ ହୋଇ ପାରିଲା ନାହିଁ । ତତ୍କାଳୀନ ରାଜନୀତି ବିଜ୍ଞାନ ଉପରେ ଝଡ଼ ସ୍ୱରୂପ ବାଧା ସୃଷ୍ଟି କଲା । ଇଟାଲି ଦେଶକୁ ସେତେବେଳେ କେତେଗୁଡ଼ିଏ କ୍ଷୁଦ୍ର ରାଜ୍ୟକୁ ନେଇ ଗଠନ କରା ଯାଇଥିଲା । ସୁତରାଂ ରାଜ୍ୟମାନଙ୍କ ଭିତରେ ପରସ୍ପର ସହିତ ବନ୍ଧୁତା ନ ଥିଲା । ସେହି ସମୟରେ କିଛି ଦିନ ଲାଗି ବୋଲନା ପୋପଙ୍କ ଅଧୀନରେ ଶାସନ କାର୍ଯ୍ୟ ଚାଲିଥିଲା । ବିଦ୍ରୋହ ପରେ ପରେ ପୋପଙ୍କ ଶାସନ ଟଳି ପଡ଼ିଲା । ଗାଲ୍‌ଭାନି ପୋପବାଦୀ ଥିବାରୁ ସରକାର ତାଙ୍କୁ ଚାକିରିରୁ ଅନ୍ତର କରିଦେଲେ । ଗାଲ୍‌ଭାନିଙ୍କ ଚାକିରିରେ ଏବେ ଡୋରି ବନ୍ଧା ହେଲା । ସେ ବେକାର ଅବସ୍ଥାରେ ତାଙ୍କ ଭାଇଙ୍କ ନିକଟରେ ସମୟ ଅତିବାହିତ କଲେ । ଖାଲିଟାରେ ବସି ରହିବା ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ଜୀବନର ଶେଷ ସମୟରେ ଏ ପ୍ରକାର ଘଟଣା ଘଟିବାରୁ ତାଙ୍କ ମନରେ ଦାରୁଣ ଆଘାତ ଘଟିଲା । ଚିନ୍ତା, ମନୁଷ୍ୟ ଶରୀର ନଷ୍ଟ କରିବାର ଅନ୍ୟ ଏକ କାରଣ । ସେଥିପାଇଁ ସେ ତାଙ୍କ ଶରୀର ପ୍ରତି ଆଉ ଯତ୍ନ ନେଲେ ନାହିଁ ।

ବୈଜ୍ଞାନିକ ଗାଲ୍‌ଭାନିଙ୍କ ଉଦ୍ଭାବନ ପ୍ରଣାଳୀ ବୈଜ୍ଞାନିକମାନଙ୍କୁ ତାଙ୍କର ଗବେଷଣା କାର୍ଯ୍ୟରେ ବହୁତ ପ୍ରେରଣା ଦେଇଅଛି । ଏଠାରେ ମନେ ରଖିବାକୁ ହେବ ଯେ ହନସ୍‌ଓରଷ୍ଟେଡ଼୍‌, ହମ୍ଫ୍ରେ ଡେଭି, ମାଇକେଲ ଫାରାଡ଼େ, ପାଣିଏଲ୍ ପ୍ରଭୃତି ବିଶିଷ୍ଟ ବୈଜ୍ଞାନିକମାନେ ମଧ୍ୟ ଗାଲ୍‌ଭାନି ଓ ଭୋଲ୍‌ଟାଙ୍କ ଦ୍ୱାରା ପ୍ରସ୍ତୁତ ବିଦ୍ୟୁତ୍ କୋଷକୁ ପରେ ଉନ୍ନତ କରିବାରେ ସମର୍ଥ ହୋଇ ଅଛନ୍ତି । ଏବଂ ତାହା ପ୍ରସ୍ତୁତ ହେବା ଫଳରେ ବହୁବିଧ ବୈଦ୍ୟୁତିକ ଯନ୍ତ୍ରପାତିର ଉଦ୍ଭାବନ ହେବା ସମ୍ଭବ ହୋଇ ପାରିଛି ।

ମନୁଷ୍ୟ ଚିରନ୍ତନ ନୁହେଁ । ତାର କର୍ମ ହିଁ କେବଳ ଦୁନିଆରେ ଚିରନ୍ତନ । ଯେତେ ଦିନ ପର୍ଯ୍ୟନ୍ତ ନୂଆ ନୂଆ ବୈଦ୍ୟୁତିକ ଯନ୍ତ୍ରପାତି

ଆଦର ଉଦ୍ଭାବନ ସ୍ନଳବ ଓ ତାହାଦ୍ୱାରା ଜନସାଧାରଣଙ୍କର ଅଶେଷ ଉପକାର ସାଧିତ ହେଉଥିବ, ସେତେଦିନ ପର୍ଯ୍ୟନ୍ତ ଗାଲ୍‌ଭାନିଙ୍କ ନାମ ପୃଥିବୀ ବକ୍ଷରେ ଏକ ଅଲଙ୍କାର ହୋଇ ରହିବ । ତାଙ୍କର ଏହି କର୍ମ-ପ୍ରେରଣା, ଧୈର୍ଯ୍ୟ, ସତ୍ୟନିଷ୍ଠ ଓ ଉଦ୍ଭାବନ ଶକ୍ତି ଆଜି ଏ ମାନବ ଜାତିର ବଡ଼ ସମ୍ବଳ ହୋଇ ପାରିଛି ।

---




ପୃଥିବୀ ବ୍ୟାପୀ ସମସ୍ତ ଲୋକେ ଆଜି ଜାଣନ୍ତି ରବର୍ଟ ଏଡ୍‌ୱିନ୍ ପିୟାରି ହେଉଛନ୍ତି ଉତ୍ତରମେରୁର ଆବିଷ୍କାରକ । ସେ ଖ୍ରୀ: ୧୮୫୬ରେ ଜନ୍ମଗ୍ରହଣ କରିଥିଲେ । ଖ୍ରୀ: ୧୮୭୭ରେ କଲେଜ ପାଠ ସମାପ୍ତି କରି ଆମେରିକା ଯୁକ୍ତରାଷ୍ଟ୍ରରେ ନୌବିଭାଗର ଇଞ୍ଜିନିୟର ପଦରେ ନିଯୁକ୍ତ ପାଇଲେ । ଖ୍ରୀ: ୧୮୮୬ରୁ ଖ୍ରୀ: ୧୯୦୯ ପର୍ଯ୍ୟନ୍ତ ଦୀର୍ଘ ୨୩ ବର୍ଷ ବ୍ୟାପୀ କଠୋର ସାଧନା, ଓ ଅଧ୍ୟବସାୟ ଫଳରେ କମାଣ୍ଡର ପିୟରି ଏତେ ବଡ଼ କୀର୍ତ୍ତି ଅର୍ଜ୍ଜନ କରି ପାରିଥିଲେ, ଏହା ଅବଶ୍ୟ ଗୌରବର ବିଷୟ । ସେ ଜଣେ ଇଞ୍ଜିନିୟର ଥାଇ ଏଭଳି ସୁଖ୍ୟାତି ଅର୍ଜ୍ଜନ କରିବା ତାଙ୍କ ପକ୍ଷେ ହିଁ ସମ୍ଭବପର । ମାତ୍ର ଜଣେ ନାବିକ ପକ୍ଷରେ ଏହି ଆବିଷ୍କାରର ୧୬ ବର୍ଷ ପୂର୍ବରୁ ବୀରତ୍ୱର ସହିତ କେତେଜଣ ବୀର ପୁରୁଷଙ୍କୁ ସଙ୍ଗରେ ଧରି ଉତ୍ତରମେରୁ ଅଭିଯାନ ଆରମ୍ଭ କରିଥିଲେ । ଏହା କମ୍ ଗୌରବର ବିଷୟ ନୁହେଁ ।

ଚିର ତୁଷାରାବୃତ ମେରୁ ଅଞ୍ଚଳ ଆବିଷ୍କାର କରିବାକୁ ଯାଇ ଅନେକଙ୍କର ଧନ ଜୀବନ ବିପଦଗ୍ରସ୍ତ ହୋଇଛି ଓ ଅନେକଙ୍କର ମଧ୍ୟ ଜୀବନ୍ତ ସମାଧି ଘଟିଛି । ତଥାପି ମନୁଷ୍ୟ ସେଥିରୁ କ୍ଷାନ୍ତ ନ ହୋଇ

ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ଶେଷରେ କୃତକାର୍ଯ୍ୟ ହୋଇଛନ୍ତି । ଗୋଟିଏ ମାତ୍ର ଜୀବନ ନଷ୍ଟ ନ ହୋଇ କାହାରି କିଛି କ୍ଷତି ନ ଘଟି ମେରୁ ଅଞ୍ଚଳ ଆବିଷ୍କାର କରିବାରେ ଯେଉଁ ବାହାଦୁରୀ ରହିଛି ତାହା କେବଳ ନାନସେନ୍‌ଙ୍କ ପକ୍ଷରେ ସମ୍ଭବ ହୋଇପାରେ ।

ସୁମେରୁ ଆବିଷ୍କାରରେ ଆମେରିକା ଯୁକ୍ତରାଷ୍ଟ୍ରର ଅଧିବାସୀ କମାଣ୍ଡର ପିୟାରୀ ଓ ନରଓ୍ୱେ ଦେଶର ବିଖ୍ୟାତ ନାବିକ ନାନ୍‌ସେନ୍‌ ଉଭୟେ ଅଭିଯାନ ଚଳାଇଥିଲେ । କେବଳ ମାତ୍ର ପିୟାରୀ ସେ ବିଷୟରେ ଖ୍ୟାତି ଅର୍ଜନ କଲେ । ନାନ୍‌ସେନ୍‌ ଖ୍ୟାତିଲାଭରୁ ବଞ୍ଚିତ ହୋଇ ସୁମେରୁ ଅଞ୍ଚଳର ପ୍ରଥମେ ଯେଉଁ ବିବରଣୀମାନ ସଂଗ୍ରହ କରିଯାଇଥିଲେ ତାହା ପରବର୍ତ୍ତୀ ଆବିଷ୍କାରକମାନଙ୍କୁ ଯଥେଷ୍ଟ ପ୍ରେରଣା ଓ ସାହାଯ୍ୟ ଦେଇଥିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ନାନ୍‌ସେନ୍‌ ୨୦ ବର୍ଷ ବୟସରେ ମେରୁଯାତ୍ରା କରିବା ପାଇଁ ମନରେ ଉଚ୍ଚ ଆକାଂକ୍ଷା ପୋଷଣ କରିଥିଲେ । ଖ୍ରୀ: ୧୮୯୩ରେ ତାଙ୍କର ଉତ୍ତରମେରୁ ଆବିଷ୍କାର ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ ହେଲା । ଏଥିପୂର୍ବରୁ ଦୀର୍ଘ ୯ ବର୍ଷ ଧରି ସେ ନାନା ଜିନିଷପତ୍ର ସଂଗ୍ରହ କରିଥିଲେ । ଶୀତଳ ଜଳବାୟୁ ମଧ୍ୟରେ ଅଭ୍ୟସ୍ତ ହେବା ପାଇଁ ଗ୍ରୀନ୍‌ଲଣ୍ଡ ଦେଶକୁ ଯାଇ ସେଠାରେ ଏସ୍କିମୋମାନଙ୍କ ସହିତ ସେମାନଙ୍କ ତମ୍ବୁରେ ବାସ କରିଥିଲେ । ଏପରିକି ସେମାନଙ୍କର ଖାଦ୍ୟ ଖାଇବାକୁ ମଧ୍ୟ ଅଭ୍ୟାସ କରିଥିଲେ । କାରଣ ସେ ଜାଣିଥିଲେ ଯେ ମେରୁ ଯାତ୍ରୀମାନଙ୍କ ପକ୍ଷେ ଏହା ବିଶେଷ ଆବଶ୍ୟକ ।

୧୮୯୩ ମସିହା ଜୁନମାସ ୨୪ ତାରିଖ ଏକ ସ୍ମରଣୀୟ ଦିବସ । ଏହିଦିନ ନାନ୍‌ସେନ୍‌ ନରଓ୍ୱେର ଖ୍ରୀଷ୍ଟିୟାନ୍‌ ବନ୍ଦରରୁ ତାଙ୍କର ୧୨ ଜଣ ବନ୍ଧୁଙ୍କ ସହିତ, ଫ୍ରାମ୍‌ ଜାହାଜରେ ଉତ୍ତରମେରୁ ଅଭିମୁଖରେ ଯାତ୍ରାକଲେ । ତାଙ୍କ ଦଳ ମଧ୍ୟରେ ୩ଜଣ ନରଓ୍ୱେବାସୀ ଓ ଦୁଇଜଣ ଲ୍ୟାପ୍‌ଲଣ୍ଡବାସୀ ଥିଲେ । ସେହି ଜାହାଜରେ କିଛି ଖାଦ୍ୟ ସହ କେତେକ ଯନ୍ତ୍ରପାତି ଓ ୫ ଖଣ୍ଡି ହାତଟଣା ସ୍ଲେଜଗାଡ଼ି ଥିଲା ।

ଉତ୍ତରମେରୁ ଅଞ୍ଚଳ ଖର ତୁଷାରବୃତ୍ତ । ସାଧାରଣ ଜାହାଜରେ ସେହିଭଳି ସ୍ଥାନକୁ ଯିବା ଅତି କଷ୍ଟକର ଏବଂ ସମସ୍ତ ପଥ ପାଦରେ ଅତିକ୍ରମ କରିବା ମଧ୍ୟ ବିପଦଜନକ । ସମୟ ସମୟରେ ମେରୁ ଅଞ୍ଚଳ ଘନୀଭୂତ ବରଫ ତରଳ ସ୍ରୋତ ଜଳରାଶିରେ ପରିଣତ ହୁଏ । ପୁଣି କେତେବେଳେ ମଧ୍ୟ ହଠାତ୍ ଜମାଟ ବାନ୍ଧି ଯାଇ ବରଫ ପାଲଟି ଯାଏ । ସୁତରାଂ ଏହି ସ୍ଥାନମାନଙ୍କରେ ଯାତ୍ରା ସମୟରେ ଯଦି ଜାହାଜଟି ବରଫ ହାରା ଅଟକି ଯାଏ, ତେବେ ବରଫ ତରଳିବା ପର୍ଯ୍ୟନ୍ତ ସେଠାରେ ଅଟକି ରହେ । ଚତୁର୍ପାର୍ଶ୍ୱରୁ ବରଫର ସ୍ତୂପ ସହି ନ ପାରି ସମୟେ ସମୟେ ଜାହାଜ ଚୂରମାର ହୋଇଯାଏ । ସୁତରାଂ ନାନ୍‌ସେନ୍ ବହୁତ ଅନୁଧ୍ୟାନ କରି ଏହି ଫ୍ରାମ୍ ଜାହାଜଟିକୁ ତିଆରି କରିଥିଲେ । ନାନ୍‌ସେନଙ୍କର ଏଭଳି ଉଦ୍ୟମକୁ ଲୋକେ ପସନ୍ଦ କରୁଥିଲେ । ସେହି ଜାହାଜ ତିଆରି କରିବାରେ ସାଧାରଣ ଚାନ୍ଦା ସହିତ ସରକାରୀ ସାହାଯ୍ୟ ମଧ୍ୟ ତାଙ୍କୁ ମିଳିଥିଲା ।

ଏହି ଫ୍ରାମର ଶବ୍ଦଟି ନରୱେର ଭାଷା । ଫ୍ରାମର ଅର୍ଥ ହେଉଛି "ଅଗ୍ରଗାମୀ" । ଏହି ଜାହାଜଟିର ଓଜନ ଖୁବ୍ ବେଶୀ । ତାହାର ଗଠନ ପ୍ରଣାଳୀ ସ୍ୱତନ୍ତ୍ର ଥିବା ଫଳରେ ବରଫ ସ୍ତୂପ ପଡ଼ିଲେ ମଧ୍ୟ ଜାହାଜଟିର କୌଣସି କ୍ଷତି ଘଟୁ ନ ଥିଲା । ବରଫ ଧକ୍କାରେ ସାଧାରଣ ଜାହାଜ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଏ । ଫ୍ରାମ୍ ଜାହାଜଟିର ତଳ ଅଂଶ ଖୁବ୍ ସାଉଁଳିଆ ଥିବାରୁ ବରଫ ଉପରେ ଯାତାୟାତ କରିବାରେ କୌଣସି ଅସୁବିଧା ହେଉ ନ ଥିଲା ।

ଯାହାହେଉନା କାହିଁକି ନାନ୍‌ସେନ୍ ନିଜ ଦଳପାଇଁ ଆବଶ୍ୟକୀୟ ଜିନିଷପତ୍ର, ଖାଦ୍ୟ ସାମଗ୍ରୀ ଇତ୍ୟାଦି ଜାହାଜରେ ବହନ କରି ନେଇଥିଲେ । ମେରୁ ଅଞ୍ଚଳରେ ଘନ କୁହୁଡ଼ି ହେଲେ ବାଟ ଘାଟ ଭଲେ ଦେଖା ନ ଯିବ ସେଥିନିମିତ୍ତ ଆଲୋକର ବନ୍ଦୋବସ୍ତ ମଧ୍ୟ କରିଥିଲେ । ଗ୍ରେଟ ଡାଇନାମା ଯନ୍ତ୍ର, ସୂପାକଳ, ବୈଜ୍ଞାନିକ ଯନ୍ତ୍ରପାତି, କ୍ରୀଡ଼ା ଓ ସଙ୍ଗୀତର ଉପକରଣ ଗୁଡ଼ିକ ସଙ୍ଗରେ ନେବାକୁ ସେମାନେ ଭୁଲିଯାଇ ନ ଥିଲେ ।

ଖ୍ରୀଷ୍ଟିୟାନ ବନ୍ଦରରୁ ବାହାରି ପ୍ରାୟ ଦେଢ଼ ମାସ ଅତିବାହିତ ହେବାପରେ ନଭଜେମଲା ଦ୍ୱୀପ ପାର୍ଶ୍ୱରେ ଘନ କୁହୁଡ଼ି ଓ ବରଫ ଗଣ୍ଡି ଭେଦକରି ଅଗଷ୍ଟ ମାସ ୪ ତାରିଖରେ କାରସାଗରରେ ପ୍ରବେଶ-କଲେ । ଜାହାଜଟି ସେପ୍ଟେମ୍ବର ମାସର ଶେଷଆଡ଼କୁ ନିଉସାଇବେରିଆ ନିକଟରେ ଯାଇ ପହଞ୍ଚିଲା । ଏହି ଦୁର୍ଗମ ପଥ ମଧ୍ୟରେ ଜାହାଜଟି ଦୀର୍ଘ କାଳ ପାଇଁ ଅଟକି ରହିଲା । ବରଫ ସ୍ତୂପରେ ଅବଶ୍ୟ ଜାହାଜଟିର କୌଣସି କ୍ଷତି ଘଟି ନ ଥିଲା ; ଯାତ୍ରୀମାନେ ସେଥିରେ ସ୍ୱଚ୍ଛନ୍ଦର ସହିତ କାଳ ଯାପନ କରୁଥିଲେ । ବରଫବେଷ୍ଟିତ ଅବସ୍ଥାରେ ଫ୍ରାମ୍ ଜାହାଜଟି ଉତ୍ତରମେରୁ ଅଭିମୁଖରେ ଆସ୍ତେ ଆସ୍ତେ ଭାସି ଚାଲିବାରେ ଲାଗିଲା । ଏହିପରି ଭାବରେ ଖ୍ରୀ: ୧୮୯୫ ମସିହାଟି ଅତିବାହିତ ହେଲା । ତା ପରେ ଆସିଲା ବସନ୍ତ ଋତୁ । ତେଣୁ ନାନ୍‌ସେନ୍ ଜୋହାନ୍‌ସେନ୍ ନାମକ ଜଣେ ବନ୍ଧୁଙ୍କୁ ସାଙ୍ଗରେ ଧରି ଉତ୍ତରମେରୁ ଅଭିମୁଖରେ ପଦବ୍ରଜରେ ଚାଲିଲେ ।



ସେ ଦିନଟି ହେଉଛି ଖ୍ରୀ: ୧୮୯୫ ମାର୍ଚ୍ଚ ମାସ ୧୪ ତାରିଖ । ତାଙ୍କ ସହିତ ସ୍ଲେଜଗାଡ଼ି, କୁକୁର ଓ ଅପାତତଃ ୧୦୦ ଦିନର ଖାଦ୍ୟ ସାମଗ୍ରୀ ମହଜୁଦ ଥିଲା । ଏଣେ ଜାହାଜଟି ତାଙ୍କର ସମୁଦ୍ର ସ୍ରୋତରେ ଭାସି ଭାସି ଚାଲିଥାଏ । ନାନ୍‌ସେନ୍ ଜାହାଜଟିକୁ ଛାଡ଼ି ପଦବ୍ରଜରେ ଚାଲିବାର ଅନ୍ୟ ଏକ କାରଣ ଥିଲା । ସେ ଜାଣିଥିଲେ ଯେ—

ସ୍ରୋତର ପ୍ରବାହ ଉତ୍ତର ସୀମାର ଶେଷରେ ପହଞ୍ଚି ପୁଣି ଦକ୍ଷିଣକୁ ଫେରିବ । ଏହା ହେଲା ତାଙ୍କର ଜାହାଜ ଘୂରିବାର ପ୍ରଧାନ କାରଣ ।

ଖ୍ରୀ: ୧୮୯୫ର ବସନ୍ତ ଋତୁ ସମୟରେ ଉତ୍ତରମେରୁ ଆଡ଼କୁ ନାନ୍‌ସେନ୍ ଅଗ୍ରସର ହେଲେ । ବରଫ ହେତୁ ଫ୍ରାମ୍ ଆଉ ଆଗକୁ ଗତି କରି ପାରିଲା ନାହିଁ । ତେଣୁ ନାନ୍‌ସେନ୍ ତାଙ୍କର ବନ୍ଧୁ ଜୋହାନଙ୍କ ସହିତ ମେରୁ ଅଡ଼କୁ ପଦବ୍ରଜରେ ଚାଲି ଚାଲି ଗଲେ । ଚାଲିଯିବା ବେଳେ ପୋଷାକପତ୍ର ବୋହିକରି ନେବା ଯେ କେତେ କଷ୍ଟଦାୟକ ତାହା ନାନ୍‌ସେନ୍ ଉପଲବ୍ଧି କରିପାରିଥିଲେ । ତଥାପି ସେମାନେ ଆନନ୍ଦର ସହିତ ୨୧ ଦିନରେ ଦୁଇଶହ ମାଇଲ ରାସ୍ତା ଚାଲିଲେ ।

ପ୍ରଧାନ ଆଶ୍ରୟ ସ୍ଥଳ ଫ୍ରାମ୍‌ରୁ ବିଦାୟ ନେଇ ନାନ୍‌ସେନ୍ ବିପଦ-ପୂର୍ଣ୍ଣ ଅସୀମ ତୁଷାରାଞ୍ଚଳ ମଧ୍ୟରେ ଅଗ୍ରସର ହେବାକୁ ଲାଗିଲେ । ଏଥିପୂର୍ବରୁ ବହୁ ଆବିଷ୍କାରକ ସେହି ତୁଷାରାଞ୍ଚଳ ମଧ୍ୟରେ ପ୍ରାଣ ହରାଇ-ଥିଲେ । ମାତ୍ର ନାନ୍‌ସେନ ନାନା ବାଧାବିଘ୍ନ ସତ୍ତ୍ୱେ ଟିକିଏ ହେଲେ ବିଚଳିତ ହୋଇ ନ ଥିଲେ । ରାତ୍ରିର ପ୍ରବଳ ଶୀତ ସେମାନଙ୍କୁ ବଡ଼ ଅସହ୍ୟ ବୋଧ ହେଲା । ଦିନତମାମ୍ ଚାଲି ଚାଲି ସେମାନେ ଏପରି କ୍ଳାନ୍ତ ହୋଇ ପଡ଼ୁଥିଲେ ଯେ, ପାଟିକୁ ଖାଦ୍ୟ ନେବା ଅବସ୍ଥାରେ ମଧ୍ୟ ଶୋଇ ପଡ଼ୁଥିଲେ । ଏହି ଦୁଃସାଧ୍ୟ ବାଧାବିଘ୍ନ ସବୁକୁ ଏଡ଼ାଇ ଦୁଇଜଣ ନରୱେବାସୀ ଅଗ୍ରସର ହୋଇ ପ୍ରାୟ ୮୮½ ଡିଗ୍ରୀ ଅକ୍ଷାଂଶରେ ଯାଇ ପହଞ୍ଚିଲେ । ଏଥିପୂର୍ବରୁ କୌଣସି ଆବିଷ୍କାରକ ମେରୁର ଏତେ ନିକଟକୁ ଯାଇ ପାରି ନ ଥିଲେ । ଖାଦ୍ୟ ଶେଷ ହୋଇ ଆସିବାରୁ ନାନ୍‌ସେନ୍ ସେଠାରୁ ଫେରି ଆସିବାକୁ ବାଧ୍ୟ ହୋଇଥିଲେ ।

ନାନ୍‌ସେନଙ୍କ ସହିତ ଯାତ୍ରୀମାନେ ଉତ୍ତରମେରୁ ଅଭିଯାନ କାଳରେ ଅନ୍ୟ ଏକ ବିପଦର ସମ୍ମୁଖୀନ ହୋଇଥିଲେ । ସେମାନେ ବଡ଼ ଧଳାଭାଲୁ ଦେଖିବାକୁ ସୁଯୋଗ ପାଇଥିଲେ । ସେହି ଧଳା ଭାଲୁଗୁଡ଼ିକ ଭାରି ଶିକାରୀ । ଅନେକ ସମୟରେ ମେରୁ ଅଭିଯାତ୍ରୀମାନଙ୍କର

ଉପ୍ତାତ ସେମାନଙ୍କ ମନରେ ଘୋର ଆଶଙ୍କା ଜାତ କରୁଥିଲା । ଭଲ୍ଲୁକମାନେ କୁକୁର ଶିକାର କରିବାକୁ ଘର ଭଲ ପାଆନ୍ତି । କେତେକ ସମୟରେ ଭଲ୍ଲୁକମାନେ ଜାହାଜ ମଧ୍ୟକୁ ପଶିଯାଇ ଯାତ୍ରୀ ଓ କୁକୁର-ମାନଙ୍କୁ ଆକ୍ରମଣ କରୁଥିଲେ । କିନ୍ତୁ ଯାତ୍ରୀମାନଙ୍କର ସତର୍କତା ଅବଲମ୍ବନ ଯୋଗୁ ସେମାନଙ୍କର କୌଣସି କ୍ଷତି ହୋଇ ନ ଥିଲା ।

ଠିକ୍ ଏହି ସମୟରେ ଖାଦ୍ୟ ପଦାର୍ଥ ଇତ୍ୟାଦି ନିଅଣ୍ଟ ପଡ଼ିବାରୁ ତାଙ୍କର ସହଯାତ୍ରୀମାନେ କୁକୁରମାନଙ୍କୁ ମାରି ସେମାନଙ୍କ ମାଂସ ଖାଇବାକୁ ଆରମ୍ଭ କଲେ । ଖ୍ରୀ: ୧୮୯୫ ଏପ୍ରିଲ ୧୦ ତାରିଖରେ ନିଜ ଦେଶକୁ ଫେରି ଆସିବାଲାଗି ନାନ୍‌ସେନ୍ ଜିଦ୍‌ଧରି ବସିଲେ । ଏଣୁ ନାନ୍‌ସେନ୍ ଜାହାଜଟିକୁ ପୁଣି ଦକ୍ଷିଣାଭିମୁଖେ ଚଳାଇଲେ । ମାତ୍ର ତାହା ଦକ୍ଷିଣ ଦିଗକୁ ନ ଯାଇ ଧୀରେ ଧୀରେ ବିପରୀତ ଦିଗକୁ ଗତି କରିବାକୁ ଲାଗିଲା ।

ଯଦିଓ ନାନ୍‌ସେନ୍ ଠିକ୍ ମେରୁରେ ପହଞ୍ଚି ପାରି ନଥିଲେ, ତଥାପି ଏଥିପୂର୍ବରୁ ଯେତେ ଆବିଷ୍କାରକ ମେରୁ ଅଞ୍ଚଳକୁ ଯାଇଥିଲେ, ସେମାନଙ୍କ ମଧ୍ୟରେ ନାନ୍‌ସେନ୍ ଅଗ୍ରଗଣ୍ୟ । ସେ ମେରୁର ଅତି ନିକଟକୁ ଯାଇଥିଲେ । ସେଠାରେ ତାଙ୍କୁ ପହଞ୍ଚିବାକୁ ମାତ୍ର ୪୬୮ କିଲୋମିଟର ବାକି ଥିଲା । ନାନ୍‌ସେନ୍ ଯଦି ଖାଦ୍ୟାଭାବର ସମ୍ମୁଖୀନ ହୋଇ ନ ଥାନ୍ତେ ତେବେ ନିଶ୍ଚୟ ୪୬୮ କିଲୋମିଟର ପଥ ଅତିକ୍ରମ କରି ଠିକ୍ ମେରୁରେ ଯାଇ ପହଞ୍ଚି ପାରିଥାନ୍ତେ । କିନ୍ତୁ ନିୟତିର ଗତି ଭିନ୍ନପ୍ରକାର ।

ଖ୍ରୀ. ୧୮୯୬ରେ ଅଭିଯାନକାରୀମାନେ ନିଜ ଦେଶକୁ ଫେରି-ଆସିବାକୁ ବ୍ୟାକୁଳ ହେଲେ । କିନ୍ତୁ ସେମାନେ ବାଟ ପାଇବେ କିପରି ? ଯେଉଁଆଡ଼କୁ ଚାହିଁଲେ ଖାଲି ବରଫ । ଫ୍ରାମ୍ ଜାହାଜକୁ, କିପରି ସେମାନେ ପାଇବେ, ସେଥିପାଇଁ ତାଙ୍କୁ ଚାରିଆଡ଼ ଅନ୍ଧକାର ଦେଖାଗଲା । ସୁବିସ୍ତୀର୍ଣ୍ଣ ବରଫ ରାଜ୍ୟରେ ଦିଗ ନିର୍ଣ୍ଣୟ କରିବା ସେମାନଙ୍କ ପକ୍ଷେ ଆଦୌ ସମ୍ଭବ ହେଲା ନାହିଁ ।

ବନ୍ଧୁମାନଙ୍କ ସହିତ ନାନ୍‌ସେନ୍ ହତାଶ ହେଲେ । ଏଠାରେ ତାଙ୍କର ମୃତ୍ୟୁ ସୁନିଶ୍ଚିତ, ଏହା ସେମାନେ ସ୍ଥିର କରିନେଲେ । ସେତେବେଳକୁ ସେମାନେ ୩୬୮୦ କିଲୋମିଟର ବାଟ ଚାଲିପାରିଛନ୍ତି । ସେମାନେ ଧୈର୍ଯ୍ୟଚ୍ୟୁତ ହୋଇ ଏଣେ ତେଣେ ବୁଲିବା ବେଳେ ହଠାତ୍ ସେ କୁକୁର ଭୁକିବା ଶବ୍ଦ ଶୁଣିବାକୁ ପାଇଲେ । ତାଙ୍କର ସାଥୀମାନେ ଆନନ୍ଦରେ ନାଚିଉଠି କହିଲେ, ଆମ୍ଭେମାନେ ମନୁଷ୍ୟର ସାଡ଼ା ଶୁଣିବାକୁ ପାଉଛୁ ।

ସତକୁ ସତ ସେମାନେ କିଛିଦୂର ଅଗ୍ରସର ହେବାପରେ ଜଣେ ଲୋକକୁ ଦେଖିଲେ । ସେ ହେଉଛନ୍ତି ଫେଡେରିକ୍ ଜ୍ୟାକ୍‌ସନ୍ । ସେ ଜଣେ ଇଂରେଜ । ନାନ୍‌ସେନ୍ ଓ ତାଙ୍କ ବନ୍ଧୁମାନଙ୍କ ପରିଚୟ ପାଇ ସେ ଖୁବ୍ ଖୁସି ହେଲେ ଏବଂ ଜ୍ୟାକ୍‌ସନ୍ ମନରେ ଦୟାଭାବ ଆଣି ୱିଣ୍ଡୋୱାର୍ଡ ନାମକ ଜାହାଜରେ ନାନ୍‌ସେନ୍ ଓ ତାଙ୍କର ବନ୍ଧୁମାନଙ୍କୁ ନେଇଆସି ନରୱେ ଦେଶରେ ଛାଡ଼ି ଦେଇଗଲେ ।

ଆଜି ସେହି ବୀରପୁରୁଷ ନାନ୍‌ସେନ୍ ନାହାନ୍ତି । କମ୍ପାନ୍ଡର ସିଭ୍ରାପ୍ସି ନାହାନ୍ତି ମାତ୍ର ତାଙ୍କର ଅସୀମ ସାହସ ଓ ବୀରତ୍ୱର କାର୍ଯ୍ୟଯୋଗୁ ସେ ଆଜି ଅମର ।

———

# ଉଦ୍ଭିଦ ଓ ମାଟି ପରୀକ୍ଷା



ବର୍ତ୍ତମାନ ପୃଥିବୀର ସବୁ ଦେଶ ଖାଦ୍ୟ ପ୍ରସ୍ତୁତ ଦିଗରେ ଆପ୍ରାଣ ଚେଷ୍ଟା ଚଳାଇଛନ୍ତି । ବିଭିନ୍ନ କୃତ୍ରିମ ଉପାୟ ଦ୍ୱାରା ଅଧିକ ଖାଦ୍ୟ ଉତ୍ପନ୍ନ କରିବାରେ ମଧ୍ୟ ସମର୍ଥ ହୋଇ ପାରୁଛନ୍ତି । ଦେଶ ଦେଶ ମଧ୍ୟରେ ଏହି ଖାଦ୍ୟ ବିନିମୟ ଯୋଗୁ ବନ୍ଧୁତା ସ୍ଥାପନ କରାଯାଇ ପାରୁଛି । ଏହି ଖାଦ୍ୟ ଆମଦାନୀ ଉପରେ ଆଜି ଯେଉଁ ଗୁରୁତ୍ୱ ଦିଆଯାଉଛି, ଆଗରୁ କାହିଁକି ଦିଆଯାଉ ନ ଥିଲା ଏ କଥା କେହି ଜାଣିଛ କି ? ତାହାର କାରଣ ହେଲା, ମନୁଷ୍ୟ ଆଦିମ ଯୁଗରେ ଫସଲ ଆମଦାନୀ କରି ଖାଦ୍ୟ ସଂଗ୍ରହ କରିବା ବିଷୟ ଆଦୌ ଜାଣି ନ ଥିଲା । ସେ ଜାଣିଥିଲା କେବଳ ତାର ଖାଦ୍ୟ ହେଉଛି ଗଛର ଫଳ ଓ ପଶୁପକ୍ଷୀଙ୍କର କଞ୍ଚା ମାଂସ । ଯେତେବେଳେ ସେ ଜାଣିଲା ଯେ ମନୁଷ୍ୟଙ୍କୁ ବଞ୍ଚି ରହିବାକୁ ହେଲେ ସ୍ୱଚ୍ଛନ୍ଦ ଖାଦ୍ୟ ଦରକାର, ସେତେବେଳେ ସେ ବିଭିନ୍ନ ଉପାୟରେ ବୁଦ୍ଧି ଖରଚ କରି ଖାଦ୍ୟ ଉତ୍ପାଦନ କରିବାରେ ସମର୍ଥ ହେଲା । ଯେଉଁ ଖାଦ୍ୟ ଉପରେ ନିର୍ଭର କରି ମନୁଷ୍ୟ ଆଜି ବଞ୍ଚି ରହି ପାରୁଛି, ସେହି ଖାଦ୍ୟ କେବେ କିପରି ଓ କାହାଦ୍ୱାରା ସୃଷ୍ଟି ହେଲା, ସେ ବିଷୟରେ ଆମେ ଟିକେ ହେଲେ ଚିନ୍ତା କରିନାହୁଁ । ଯେଉଁ ବ୍ୟକ୍ତି ପ୍ରଥମେ ଖାଦ୍ୟକୁ ଆମ ନିକଟରେ ପରିଚୟ କରାଇ ଦେଇ ପାରିଲେ ସେ ଯେ ଆମର ପରି ଜଣେ

ସାଧାରଣ ବ୍ୟକ୍ତି ଏ କଥା କହିବା ବୋଧହୁଏ ଯୁକ୍ତିସଙ୍ଗତ ହେବ ନାହିଁ ।

ଐତିହାସିକମାନଙ୍କ ମତରେ ଆଜକୁ ପ୍ରାୟ ଦଶ ବାର ହଜାର ବର୍ଷ ପୂର୍ବେ ଆମ୍ଭମାନଙ୍କର ଏହି କୃଷି କରିବା ଆରମ୍ଭ ହୋଇଥିଲା । ତା ପୂର୍ବରୁ ଆଦିମ ଲୋକେ ବଣରୁ ଫଳମୂଳ ସଂଗ୍ରହ କରି ଜୀବନ ଧାରଣ କରୁଥିଲେ । ମନୁଷ୍ୟ ପ୍ରଥମେ ଲକ୍ଷ୍ୟ କଲା, ପ୍ରକୃତିରେ ତୃଣଜାତୀୟ ବୃକ୍ଷ ଫୁଲ ଓ ଫଳ ଧାରଣ କରୁଛି । ତାପରେ ଆହୁରି ମଧ୍ୟ ଦେଖିଲା, ବୀଜ ବିକ୍ଷେପ ଦ୍ୱାରା ସେଗୁଡ଼ିକର ବଂଶ ବୃଦ୍ଧି ହେଉଛି ।

ଶେଷରେ ତୃଣଜାତୀୟ ଉଦ୍ଭିଦର ଜୀବନଚକ୍ର ସମ୍ବନ୍ଧରେ ଜ୍ଞାନଲାଭ କଲା । ଏହା ପରେ ନିଜ ହାତରେ ଅଙ୍ଗୁଳି ଦ୍ୱାରା ମାଟିକୁ ଖୋଳି ବୀଜ ବପନ କଲା ଓ ଫସଲ ଆମଦାନୀ କଲା । ସମ୍ଭବତଃ କୃଷି ଏହିପରି ସର୍ବପ୍ରଥମେ ଆରମ୍ଭ ହୋଇଥିଲା ।

ଗୋଟିଏ ସ୍ଥାନରେ ମାଟିକୁ ଖୋଳି ତାହା ବହୁବର୍ଷ ଧରି ଫସଲ ଆମଦାନୀ କରିବା ସମ୍ଭବପର ହେଲା ନାହିଁ । କାରଣ ଦୁଇ ତିନିବର୍ଷ ମଧ୍ୟରେ ହୁଏତ ସେ ଜାଗାର ଉର୍ବରଶକ୍ତି କ୍ରମେ କମିଯାଇଥିବ । ଫଳରେ ସେ ଜମିରୁ ଅପେକ୍ଷାକୃତ ଆମଦାନୀ କମିଗଲା । କୃଷିର ଏହି ଅବନତିର କାରଣ ଓ ତାର ଉନ୍ନତି ସମ୍ବନ୍ଧରେ ମନୁଷ୍ୟ ନାନା ବୈଜ୍ଞାନିକ ତଥ୍ୟ ଜାଣିବା ପାଇଁ ଗବେଷଣା କଲା ।

ଖ୍ରୀଷ୍ଟପୂର୍ବ ୩୮୪ରୁ ୩୨୨ ମଧ୍ୟରେ ଖ୍ୟାତନାମା ଦାର୍ଶନିକ ଆରିଷ୍ଟଟଲ୍ ପ୍ରଚାର କଲେ ଯେ, କ୍ଷିତି, ଅପ୍, ତେଜ, ମରୁତ ଏହି ଚାରି ଗୋଟିକୁ ମିଶାଇ ଉଦ୍ଭିଦ ତାର ଚେରଦ୍ୱାରା ଗୋଟିଏ ସୂକ୍ଷ୍ମ ପଦାର୍ଥ ତିଆରି କରେ । କ୍ଷିତି, ଅପ୍, ତେଜ ଓ ମରୁତର ଅର୍ଥ ଯଥାକ୍ରମେ ମାଟି, ଜଳ, କିରଣ ଓ ପବନ । ଏହି ଚାରୋଟି ଉପାଦାନକୁ ମିଶାଇ ଉଦ୍ଭିଦ ଯେଉଁ ସୂକ୍ଷ୍ମ ଉପାଦାନ ତିଆରି କରେ, ତାହାକୁ ନିଜର ଗଣ୍ଡି ଓ କାଣ୍ଡ ସାହାଯ୍ୟରେ ବିଭିନ୍ନ ଅଂଶମାନଙ୍କୁ ଖାଦ୍ୟ ଯୋଗାଇ ଦିଏ । ଏହାଦ୍ୱାରା

ଉଦ୍ଭିଦ ବଞ୍ଚିରହେ । ତା ଛଡ଼ା ଏହି ଉଦ୍ଭିଦକୁ ମନୁଷ୍ୟ ଓ ଜୀବଜନ୍ତୁ ଖାଇ ଶରୀରର ଅଂଶ ଗଠନ କରିପାରନ୍ତି । ଏହି ସୂକ୍ଷ୍ମ ପଦାର୍ଥଟିକୁ ସେ "ହାମୋଇ ମେରିଆ" ଆଖ୍ୟା ଦେଇଥିଲେ । ଏହି ଦାର୍ଶନିକ ବିଶ୍ୱାସ ପ୍ରାୟ ଦୁଇହଜାର ବର୍ଷ ପର୍ଯ୍ୟନ୍ତ ଚାଲିଲା ।

ଦେଖିବାକୁ ଗଲେ ପଞ୍ଚମ ଏବଂ ଷୋଡ଼ଶ ଶତାବ୍ଦୀ ପରୀକ୍ଷାମୂଳକ ଭାବେ ବିଜ୍ଞାନର ଅଭ୍ୟୁଦୟ ଯୁଗ । ଏ ଯୁଗରେ ପଦାର୍ଥ ଓ ରସାୟନ ଜୀବ ବିଜ୍ଞାନରେ ବିଶେଷ ଉନ୍ନତି ଘଟିଲା ଓ ଉଦ୍ଭିଦର ସୃଷ୍ଟି ଓ ଆଉ ସୃଷ୍ଟିତତ୍ତ୍ୱ ବିଷୟରେ ଅନେକ ପ୍ରକାର ଗବେଷଣା ଆରମ୍ଭ ହେଲା । ଗବେଷଣାରେ ଆରିଷ୍ଟୋଟଲଙ୍କ "ହାମୋଇ ମେରିଆ' ଓ ଅନ୍ୟ ଦାର୍ଶନିକ-ମାନଙ୍କର 'ଫ୍ଲଜିଷ୍ଟାନ୍' ତତ୍ତ୍ୱ ଉପରେ ଆଉ ବିଶ୍ୱାସ ରହିଲା ନାହିଁ । ସମୟର ଅପଚୟ ନ ହୋଇ ଗବେଷଣା ଚାଲିଥାଏ ଉଦ୍ଭିଦର ସୃଷ୍ଟି ତତ୍ତ୍ୱ ପାଇବା ଆଶାରେ । ଦିନକୁଦିନ ନୂତନ, ନୂତନ ପ୍ରଣାଳୀ ମଧ୍ୟ ପ୍ରୟୋଗ ହେଉଥାଏ । ଅଧ୍ୟବସାୟର ଫଳ କେବେହେଲେ ଲୁଚି ରହେ ନାହିଁ । ପୁଣି କିଛିଦିନ ବିତିଗଲା । ପରୀକ୍ଷାମୂଳକ ପ୍ରଣାଳୀରେ ହଠାତ୍ ଏକ ନୂଆ ତଥ୍ୟ ଆବିଷ୍କାରର ବାଟ ଦେଖାଇଲେ ବୈଜ୍ଞାନିକ ଭାନ ହେଲ୍ମଣ୍ଟ ।

ଏହି କ୍ଷଣଜନ୍ମା ବୈଜ୍ଞାନିକ ହେଲ୍ମଣ୍ଟ ୧୫୭୭ ଖ୍ରୀ: ରେ ଜନ୍ମ ହୋଇଥିଲେ ଇଉରୋପ ଅନ୍ତର୍ଗତ ବେଲ୍ଜିୟମ୍ ଦେଶର ବ୍ରୁସେଲ୍ସ୍ ସହରରେ । ତାଙ୍କର ପିତା ବ୍ରାବାଣ୍ଟର ଜଣେ ଜମିଦାର । ସେ ଲୁଭିଆନ ସହରରେ ଅଧ୍ୟୟନ କରିଥିଲେ । ଯେତେବେଳେ ତାଙ୍କୁ ୨୨ ବର୍ଷ ସେ ଡକ୍ଟର ଅଫ୍ ମେଡ଼ିସିନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସୁଇଜର-ଲଣ୍ଡର ନାମଜାଦା ବୈଜ୍ଞାନିକ ପାର୍ଶେଲସ୍‌ଙ୍କୁ ସେ ଗୁରୁ ବୋଲି ମାନିଲେ ଏବଂ ତାଙ୍କର ପରୀକ୍ଷାମୂଳକ ତଥ୍ୟ ସମୂହକୁ ଆଦର୍ଶ ବୋଲି ଗ୍ରହଣ କଲେ ।

ନିଜର ଜମିଦାରୀ ଇଲାକାରେ ଥିବା ଭିଲଭୋର୍ଡ ସହରକୁ ଯାଇ ସେଠାରେ ଭାନ୍‌ହେଲ୍ମଣ୍ଟ ଡାକ୍ତରୀ ବ୍ୟବସାୟ କଲେ । ବ୍ୟବସାୟ ଭିତରେ ରହି ପରୀକ୍ଷାମୂଳକ ତଥ୍ୟ ଅନୁସନ୍ଧାନରେ ମଧ୍ୟ ଲାଗିଥିଲେ ।

ଖ୍ରୀ. ପୂ. ୬୪୦ରେ ଗ୍ରୀକ୍ ଦାର୍ଶନିକ ଥେଲସ୍‌ଙ୍କ ତତ୍ତ୍ୱ 'ସମସ୍ତ ସୃଷ୍ଟିର କାରଣ ଜଳ'କୁ ଠିକ୍ ଭାବି ସେ ଏକ ପରୀକ୍ଷା ଆରମ୍ଭ କଲେ । ସେ ଭାବିଲେ ଏହି ତତ୍ତ୍ୱ ଉଦ୍ଭିଦ ପୁଷ୍ଟିର ପ୍ରକୃତ କାରଣ ।

ଭାନ୍‌ହେଲ୍‌ମଣ୍ଟ ମାଟି କୁଣ୍ଡଟିଏ ଆଣିଲେ । ଥୋଡ଼ାଏ ମାଟି ଆଣି ତାକୁ ଚୁଲି ନିଆଁରେ ଶୁଖାଇ ସେଥିରୁ ୨୦୦ ପାଉଣ୍ଡ ଓଜନର ମାଟି ସେ କୁଣ୍ଡରେ ଭର୍ତ୍ତି କଲେ । ୫ ପାଉଣ୍ଡ ଓଜନର ଗୋଟିଏ ଉଇଲୋ ଗଛ ଆଣି ସେହି ମାଟିରେ ଲଗାଇଲେ । କେବଳ ବର୍ଷାପାଣି ସେହି କୁଣ୍ଡରେ ଢାଳିଲେ । ବର୍ଷା ପାଣି ସରିଯିବା ପରେ ସେଥିରେ ପାତିତ ଜଳ ଦିଆଗଲା । କୁଣ୍ଡରେ ବାହାରର ଧୂଳି ଇତ୍ୟାଦି ନ ପଡ଼ିବା ପାଇଁ ଗୋଟିଏ ଟିଣ ଘୋଡ଼ାଇ ରଖିଲେ । ସେହି ଉଇଲୋ ଗଛର କାଣ୍ଡଟି ବଢ଼ିବା ଓ ଜଳ ପାରିବା ଭଳି ଟିଣରେ ଗୋଟିଏ ଛିଦ୍ର ରଖିଲେ ।

ବର୍ଷା ଓ ପାତିତ ଜଳ ସେଥିରେ ଦେବା ଚାଲିଥାଏ । ଏହିପରି ପାଞ୍ଚବର୍ଷ ବିତିଗଲା । ଏବେ ହେଲ୍‌ମଣ୍ଟ ସେହି ଉଇଲୋ ଗଛଟିକୁ ଉପାଡ଼ି ନେଇ ତା ଚେରକୁ ଧୋଇ ଦେଇ ଗଛଟିକୁ ଓଜନ କଲେ । ୫ ବର୍ଷ ମଧ୍ୟରେ ଗଛଟି କେବଳ ପାଣି ପାଇ ୧୬୯ ପାଉଣ୍ଡ ୮ ଆଉନ୍ସ ବଢ଼ିଥିଲା । କୁଣ୍ଡରେ ଥିବା ମାଟିକୁ ସମସ୍ତ ଓଜନ କରି ଦେଖିବାରୁ ଜଣାଗଲା ୨ ଆଉନ୍‌ସ ମାଟି କମିଛି । ୫ ବର୍ଷ ମଧ୍ୟରେ ୨ ଆଉନ୍‌ସ ମାଟି କମିଯିବା କିଛି ବିଶେଷ କଥା ନୁହେଁ ବୋଲି ସେ ଭାବିଲେ । ପୁଣି ଭାବି ସ୍ଥିର କଲେ ଯେ ଗଛଟି ୧୬୪ ପାଉଣ୍ଡ ୩ ଆଉନ୍‌ସ ଅଧିକ ଓଜନ କେବଳ ଜଳଯୋଗେ ହୋଇ ପାରିଛି । ଜଳ ଏକମାତ୍ର ଉଦ୍ଭିଦର ପୁଷ୍ଟିକାରକ ପଦାର୍ଥ ବୋଲି ତାଙ୍କର ସେତେବେଳେ ଧାରଣା ହେଲା ।

କ୧୦.ର ପରୀକ୍ଷା ପରେ ମଧ୍ୟ ଭାନ୍‌ହେଲ୍‌ମଣ୍ଟଙ୍କର ସିଦ୍ଧାନ୍ତ ଭ୍ରମପୂର୍ଣ୍ଣ ହେଲା । ଦୁଇଟି ବସ୍ତୁ ଥିବା ଫଳରେ ସେ କାହାରି ଉପରେ ଗୁରୁତ୍ୱ ଦେଇ ପାରିଲେ ନାହିଁ । ପ୍ରଥମରେ ହେଲା ମାଟି, ଦ୍ୱିତୀୟଟି ହେଲା ଟିଣ ଭିତରେ ଥିବା ଗଛ ଚାରିପଟର ବାୟୁ ସମୂହ । ଭାନ୍‌ହେଲ୍‌ମଣ୍ଟ ୬୨ ପାଉଣ୍ଡ ଓଜନ ଡାଳ ଖଣ୍ଡିଏ ଜାଳିଲେ ଗଛରୁ

କାଟି ଦେଇ ତାକୁ ନିଆଁରେ ପୋଡ଼ିଲେ । ସେଥିରୁ ବାହାରିଲା ୬୧ ପାଉଣ୍ଡ ଓଜନର କାଠ ରସ ଓ ୧ ପାଉଣ୍ଡ ପାଉଁଷ । ଏହି କାଠ ରସର ଅନ୍ୟ ନାମ ହେଉଛି 'ସ୍ପିରିଟସ୍ ସିଲଭେଷ୍ଟର' । ସେ ଏହି ଗ୍ୟାସ୍କୁ ଜଳର ଅନୁରୂପ ବୋଲି ସ୍ଥିର କଲେ । ପ୍ରକୃତରେ ଏହି ଗ୍ୟାସ୍ ହେଉଛି ଅଙ୍ଗାରକାମ୍ଳ । ଏହି ଅଙ୍ଗାରକାମ୍ଳ ଗ୍ୟାସ୍ ସାହାଯ୍ୟରେ ବିଜ୍ଞାନାଗାରରେ ଆଜକାଲି ପରୀକ୍ଷା କରାଯାଉଛି । ଉଦ୍ଭିଦର ପରିପୁଷ୍ଟିରେ ଅଙ୍ଗାରକାମ୍ଳ ଯେ ମୁଖ୍ୟଭାଗ ନିଏ ଏ କଥା ସେ ପୂର୍ବରୁ କେବେ କଳ୍ପନା କରି ନ ଥିଲେ ।

ଭାନ୍ ହେଲ୍ମଣ୍ଟ ପରୀକ୍ଷାର ଶେଷ ସିଦ୍ଧାନ୍ତରେ ଉପନୀତ ହୋଇପାରି ନ ଥିଲେ । ମାତ୍ର କୃଷି ବିଜ୍ଞାନ ସମ୍ବନ୍ଧରେ ଉଦ୍ଭିଦର ଖାଦ୍ୟ ଓ ମାଟିର ଉର୍ବରତା ବୈଜ୍ଞାନିକ ପ୍ରଣାଳୀରେ, ପରୀକ୍ଷା କରିବାରେ ସେ ଥିଲେ ଏକମାତ୍ର ପଥପ୍ରଦର୍ଶକ ।

ଭାନ୍ ହେଲ୍ମଣ୍ଟଙ୍କ ପରୀକ୍ଷା ଅତି ଉଚ୍ଚକୋଟୀର । ତାଙ୍କର ଏହି ବୈଜ୍ଞାନିକ ପ୍ରଣାଳୀର ପରୀକ୍ଷାମୂଳକ ବ୍ୟବସ୍ଥା ଅନୁଯାୟୀ "କୁଣ୍ଡ କୃଷି ପରୀକ୍ଷା" ଆଜ କାଲିର ଉତ୍କୃଷ୍ଟ ପନ୍ଥା । କୁଣ୍ଡେ କୃଷି ପରୀକ୍ଷା-ମୂଳକ ବ୍ୟବସ୍ଥା ଅନୁଯାୟୀ କୌଣସି ପ୍ରକାର ସାର, ପିଡ଼ିଆ ରସାୟନିକ ପଦାର୍ଥର ପ୍ରୟୋଗ, ଉପକାରିତା, ପ୍ରୟୋଗର ପ୍ରଣାଳୀ, ପ୍ରୟୋଗର ସୁବିଧା ଅସୁବିଧା ଆଦି ନିୟନ୍ତ୍ରଣ କରାଯାଏ ।

ଜମିବାଡ଼ରେ ଏ ପ୍ରକାର ପରୀକ୍ଷା କରିବାକୁ ହୁଏତ ସମୟ ଓ ବ୍ୟୟସାପେକ୍ଷ । କାରଣ ଏହାର ପାରିପାର୍ଶ୍ୱିକ ଅବସ୍ଥା ନେଇ ସମ୍ଭବପର ହୁଏ ନାହିଁ, ଯଦିଓ ସମ୍ଭବ ହୁଏ, ତେବେ ବିଶେଷ କଷ୍ଟକର ହେବ । କେବଳ କୁଣ୍ଡ ଓ କୃଷି ପରୀକ୍ଷାମୂଳକ ବ୍ୟବସ୍ଥା ଅନୁସାରେ ମାଟିର ଉଦ୍ଭିଦ ଉପରେ କପରି ପ୍ରଭାବ ପଡ଼େ, ତାହା ଅତି ସହଜ ଓ ଅଳ୍ପ ଖର୍ଚ୍ଚରେ ସ୍ଥିର ହୋଇପାରେ ।

ସତ୍ୟର ଅନୁସନ୍ଧାନରେ ପ୍ରମାଦପୂର୍ଣ୍ଣ ସିଦ୍ଧାନ୍ତ ଓ ଭ୍ରମ ଥାଇପାରେ, ମାତ୍ର ଏହି ଭ୍ରମ ଏବଂ ପ୍ରମାଦଗୁଡ଼ିକ ସତ୍ୟ । ନିରୂପଣରେ ବିଶେଷ ସାହାଯ୍ୟ କରେ ।

ଭାନ୍ ହେଲମଣ୍ଟ୍‌ଙ୍କ ପରୀକ୍ଷା, କୃଷି ରସାୟନ ଇତିହାସର ଏକ ଯୁକ୍ତିସଙ୍ଗତ ପରୀକ୍ଷା, ଏହି ନିଗୁଢ଼ ତଥ୍ୟଗୁଡ଼ିକ ପରବର୍ତ୍ତୀ କୃଷି-ବିଜ୍ଞାନ ଯଥେଷ୍ଟ ପ୍ରେରଣା ଦେବ, ଏଥିରେ ସନ୍ଦେହ ନାହିଁ । ବୈଜ୍ଞାନିକ ହେଲ୍‌ମଣ୍ଟ ଆଜି ଇହଜଗତରେ ନାହାନ୍ତି ସତ, ମାତ୍ର ତାଙ୍କର ଏହି ଅଭିନବ ପ୍ରଣାଳୀ ଯେତେ ଦିନ ଜନହିତକର କାର୍ଯ୍ୟରେ ଲାଗୁଥିବ, ସେ ବିଶ୍ୱବାସୀଙ୍କର ଚିରସ୍ମରଣୀୟ ହୋଇ ରହିବେ ।

— —



# ମହାକାଶରେ ମନୁଷ୍ୟର ସନ୍ତରଣ

ଏ ଯୁଗର ମାନବସମାଜ ବିଜ୍ଞାନ ବଳରେ ପ୍ରକୃତିକୁ ଜୟଲାଭ କରିବା ଆଶାରେ ଆଜ ଅଦମ୍ୟ ଚେଷ୍ଟା ଚଳାଇଛି । ମନୁଷ୍ୟ ବିଜ୍ଞାନରୂପକ ଅସ୍ତ୍ରବଳରେ ବଳୀୟାନ୍ ହୋଇ ଆଜ ପ୍ରସ୍ତୁତ ହୋଇଛି ପ୍ରକୃତି ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ । ପ୍ରକୃତି ସେ ତାକୁ ସହଜରେ ପରାସ୍ତ କରିବ ଏହା ଆମ୍ଭମାନଙ୍କର କଳ୍ପନାତୀତ । ମନୁଷ୍ୟର ସେହି ଅସ୍ତ୍ରଗୁଡ଼ିକ ହେଲା, ଆଧୁନିକ ଯୁଗର ଯନ୍ତ୍ରପାତି ।

ମନୁଷ୍ୟ ଏହି ଅସ୍ତ୍ରବଳରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଆଦି ତ୍ରିପୁର ବିଜୟୀ ହେଲା । ସ୍ୱର୍ଗ ହେଲା ଆକାଶପଥ । ଏହି ଆକାଶ ପଥରେ ଉଡ଼ାଜାହାଜରେ ଉଡ଼ି ବିଭିନ୍ନ ଦେଶ ସହିତ ସମ୍ପର୍କ ସ୍ଥାପନ କଲା । ମର୍ତ୍ତ୍ୟ ହେଉଛି ଆମର ଭୂପୃଷ୍ଠ ; ଯେଉଁଠି କି ଆମେ ବସବାସ କରି ରହୁଥାଏ । ବିଜ୍ଞାନ ବଳରେ ବିଭିନ୍ନ ପ୍ରକାର କଳକାରଖାନା ଓ ମଟର, ରେଳ ପ୍ରଭୃତି ଯାନବାହନ ପ୍ରସ୍ତୁତ କରି ନିଜର ଅଭାବ ଅସୁବିଧା ମେଣ୍ଟାଇ ପାରିଲା । ତା ଛଡ଼ା ପାତାଳ ହେଲା ଭୂଗର୍ଭ । ଆମର ଭୂଗର୍ଭରୁ ବିଜ୍ଞାନବଳରେ ଖୋଳିତାଡ଼ି ବାହାର କଲା—ଲୌହ, ସ୍ୱର୍ଣ୍ଣ, ରୌପ୍ୟ ଓ

ପେଟ୍ରୋଲ୍ ଆଦି ଅମୂଲ୍ୟ ଧାତୁସମ୍ପଦ । ଆଜି ପ୍ରକୃତ ଅର୍ଥରେ ରହିଲା କେବଳ ମହାସାଗର । ତାକୁ ମଧ୍ୟ ଆଜି ସେମାନେ ଯନ୍ତ୍ର ପ୍ରସ୍ତୁତ କରି ଅତଳସାଗର ଗର୍ଭରେ ବିଚରଣ କରି ବହୁ ମୂଲ୍ୟବାନ ବସ୍ତୁ ମୁକ୍ତାକୁ ମଧ୍ୟ ସଂଗ୍ରହ କରି ପାରିଲେ । ଆହୁରି ମଧ୍ୟ ପ୍ରକୃତ ଜଗତରେ ସେ ବିଭିନ୍ନ ପ୍ରକାର ବସ୍ତୁ ଓ ଉଦ୍ଭିଦ ସମ୍ପର୍କରେ ଗବେଷଣା କରି ବିଭିନ୍ନ ଫଳ ପାଇଲେ । ଏହାପରେ ଅଜ୍ଞାତ ଆଉ ରହିଲା ବା କେଉଁଠି ?

ତଥାପି ମନୁଷ୍ୟ ସେଥିରେ ତୃପ୍ତି ନ ହୋଇ ବର୍ତ୍ତମାନ ଅନ୍ୟାନ୍ୟ ଗ୍ରହ ଉପଗ୍ରହ କ'ଣ ଓ ସେଠାରେ କଣ ସବୁ ରହିଛି ସେ ବିଷୟରେ



ଜାଣିବା ପାଇଁ ଅବିରାମ ସଂଗ୍ରାମ ଚଳାଇଛି । ଏଥିପାଇଁ ମନୁଷ୍ୟ ଉଦ୍ଭାବନ କରିଛି ଯାନ୍ତ୍ରିକ ଯାନ ବା 'ରକେଟ' । ଏହି ରକେଟ୍‌ର ଗତି ୧ ଘଣ୍ଟାକୁ ୮୧୬୦୦ କିଲୋମିଟର । ଏହାଠାରୁ ଆଉ କୌଣସି ଯାନ ପୃଥିବୀରେ ଏ

ପର୍ଯ୍ୟନ୍ତ ଉଦ୍ଭାବନ ହୋଇନାହିଁ ଯାହାକି ତାଠାରୁ ଅଧିକ ବେଗରେ ଗତିକରି ପାରିବ । ଏହି ରକେଟ୍‌କୁ ଆମେରିକା ଓ ରୁଷ ଦେଶ ପ୍ରଭୃତି ସଭ୍ୟଦେଶମାନେ ପ୍ରଥମେ ଉଦ୍ଭାବନ କଲେ । ସେମାନେ କିପରି ଏହାକୁ ଉଦ୍ଭାବନ କଲେ ଏ କଥା ଶୁଣିଲେ ଆମକୁ ଆଶ୍ଚର୍ଯ୍ୟ ଲାଗୁଛି । ମାତ୍ର ସେହି ରକେଟଯାନରେ ଆମେରିକା ଓ ରୁଷ ଦେଶ ପ୍ରଭୃତିର ବୀରପୁରୁଷ ଓ ବୀର ସ୍ତ୍ରୀମାନେ ଯେ ମହାକାଶ ଶୂନ୍ୟରେ ଭ୍ରମଣ କରୁଛନ୍ତି, ଏକଥା ଜାଣିଲାବେଳକୁ ମୁଣ୍ଡରେ ହାତ ଦେବାକୁ ହେଉଛି ।

ମହାକାଶରେ ରକେଟ୍‌ରେ ଘୂରି ବୁଲିବା ପାଇଁ ପ୍ରଥମେ ପରୀକ୍ଷା ସ୍ୱରୂପ କୁକୁର ଓ ଅନ୍ୟାନ୍ୟ ଜୀବମାନଙ୍କୁ ପ୍ରେରଣ କରାଗଲା । ତା'ପରେ





ରୁଷ ଦେଶରୁ ଭ୍ୟାଲେଣ୍ଟିନା ଓ ତେରେସ୍କୋଭା ଏହି ରକେଟ୍ ସାହାଯ୍ୟରେ ମହାକାଶ ଭ୍ରମଣରେ ଯାଇଥିଲେ ଏବଂ ନିର୍ବିଘ୍ନରେ ସେ ଭୂପୃଷ୍ଠକୁ ଫେରି ଆସିବାରୁ ପୃଥିବୀର ପ୍ରତ୍ୟେକ ଦେଶରୁ ତାଙ୍କୁ ଉଚ୍ଚ ପ୍ରଶଂସା ମିଳିଲା । ପୃଥିବୀର ସବୁ ସ୍ଥାନକୁ ଭ୍ରମଣରେ ଯିବା ପାଇଁ ତାଙ୍କ ନିକଟକୁ ନିମନ୍ତ୍ରଣ ମଧ୍ୟ ଆସିଲା ।

ମନୁଷ୍ୟ ସେତିକରେ ସନ୍ତୁଷ୍ଟ ନ ରହି ଏ ପର୍ଯ୍ୟନ୍ତ ପ୍ରକୃତି ବିରୁଦ୍ଧରେ ସଂଗ୍ରାମରେ ବ୍ୟସ୍ତ ରହିଛି । ଭ୍ୟାଲେଣ୍ଟିନା ଓ ତେରେସ୍କୋଭାଙ୍କ

ମହାକାଶ ଭ୍ରମଣ ପରେ ପୁନଶ୍ଚ ରୁଷ ଦେଶର ଦୁଇଜଣ ବୀର ଯବାନ୍ ମହାକାଶ ଭ୍ରମଣ ଉଦ୍ଦେଶ୍ୟରେ ବାହାରିଲେ । ସେମାନେ ମହାବ୍ୟୋମ ସାହାଯ୍ୟରେ ବହିରାକାଶ ଭ୍ରମଣ କରି ଯେଉଁ କୃତିତ୍ୱପୂର୍ଣ୍ଣ ବିଜୟ ହାସଲ କଲେ ସେ ବିଷୟରେ ସମ୍ୟକ୍ ଆଲୋଚନା କରାଯାଉ । ସେହି ବୀର ଯବାନ୍ ଦୁଇଜଣଙ୍କ ପରିଚୟ ପରେ ପାଇବ । ବର୍ତ୍ତମାନ ସେହି ମହାବ୍ୟୋମ ଓ ମହାକାଶରେ ମଣିଷର କିପରି ପଦ ସଂଚାର ହେଲା, ତାହା ବର୍ତ୍ତମାନ ଆମେ ଜାଣିବା ।

ମହାକାଶଯାତ୍ରୀ, ମହାକାଶ ଯାନରେ ଥିବାବେଳରେ ତାର ବସିବାର ସ୍ଥାନ ଚତୁଃପାର୍ଶ୍ୱର ଝୁଲା ଯାଇଥିବା ଯନ୍ତ୍ରପାତି ଇତ୍ୟାଦି ସାହାଯ୍ୟରେ ଆଶ୍ରୟ ନେଇଥାଏ । ଯେତେବେଳେ ସେ ତାର କକ୍ଷ ତ୍ୟାଗ କରି ବାହାରକୁ ଯାଏ, ସେତେବେଳେ ତାର ନିରାଶ୍ରୟ ଅବସ୍ଥା । ତାର ଆଶ୍ରୟ କିଛି ନ ଥାଏ । ସୁତରାଂ ସାଧକର ଦୃଷ୍ଟିକୋଣରୁ ବିଚାର କରିବାକୁ ହେଲେ କର୍ତ୍ତବ୍ୟନିଷ୍ଠ ଓ କାର୍ଯ୍ୟକ୍ଷମ ହେବା ବାଞ୍ଛନୀୟ । ବିଶେଷତଃ ମହାକାଶଯାତ୍ରୀ ପକ୍ଷେ ଆବଶ୍ୟକୀୟ ଗତି ସମନ୍ୱୟର କୌଶଳକୁ ଆୟତ୍ତ କରିବା ଏକାନ୍ତ ବିଧେୟ । ମହାକାଶଯାନରୁ କାର୍ଯ୍ୟକ୍ଷମ ପ୍ରେରଣ ସମୟରେ ଟେଲିଭିଜନ୍ ପର୍ଦ୍ଦାରେ ବିମୁଗ୍ଧ ଚିତ୍ତରେ ଏହା ଦେଖିବାକୁ ମିଳେ ।

ଖୋସାରୁ ବାହାରିବା ସମୟରେ ପ୍ରଜାପତିର ଏ ଖଣ୍ଡିଉଡ଼ା ସହିତ ମହାକାଶରେ ମଣିଷର ପଦ ସଂଚାରକୁ ଏଠାରେ ତୁଳନା କରାଯାଇଛି । ସୋଭିଏତ୍ ଦେଶର ଇଞ୍ଜିନିୟର ଓ ବୈଜ୍ଞାନିକମାନେ ତିଆରି କରିଥିବା ମହାକାଶ ପରିଛଦରେ ଯେଉଁ ସ୍ୱୟଂ-ସମ୍ପୂର୍ଣ୍ଣ ଜୀବନ ରକ୍ଷା କରିବାର ବ୍ୟବସ୍ଥା ଖଞ୍ଜିଛନ୍ତି, ତାହା ନାଭିନାଭିକୁ ସୁଯୋଗ ପ୍ରଦାନ କରୁଛି । ବାସ୍ତବିକ୍ ଏହା ଚମତ୍କାର ବିଷୟ । ଯଦି ମହାବ୍ୟୋମର ଶୂନ୍ୟ ସ୍ଥାନ ପରିବର୍ତ୍ତେ କୌଣସି ଜ୍ୟୋତିଷ୍କର ପୃଷ୍ଠ ଦେଶ ମହାକାଶଯାତ୍ରୀର ପାଦତଳକୁ ସ୍ପର୍ଶ କରନ୍ତା, ତେବେ ଅକ୍ଲେଶରେ ସେ ସେଠାରେ ପାଦଘାତ ନିଶ୍ଚୟ କରି ପାରନ୍ତା । ବାସ୍ତବିକ୍ ଏ କୃତିତ୍ୱ କି ଚମତ୍କାର ?

ମହାକାଶରେ ମନୁଷ୍ୟର ଆବର୍ତ୍ତନ ପାଇଁ ଗୁରୁତ୍ୱପୂର୍ଣ୍ଣ ପ୍ରଯୁକ୍ତିଗତ ଓ'କ୍ରସ-ଜୀବ-ବିଦ୍ୟାର ପ୍ରସ୍ତୁତ କରାଯାଇଥିଲା । ଏହା କହିବା ଅପ୍ରାସଙ୍ଗିକ । ମାତ୍ର ସାଧାରଣ ସମ୍ମତ ତାଲିମ ପାଇବା ଓ ପ୍ରସ୍ତୁତ



ଅନେକ ମହାକାଶଯାନରୁ ଅବତରଣ କରିବା ଲାଗି ସକଳ କାର୍ଯ୍ୟର ଅଭ୍ୟାସ ବିଶେଷକରି ମନ୍ତ୍ର ଓ ଯନ୍ତ୍ର ବ୍ୟବସ୍ଥାରେ ତାହା କରିବାକୁ ହୋଇଥିଲା ।

ମହାଶୂନ୍ୟରେ ମହାକାଶଯାତ୍ରୀଙ୍କର ଜୀବନର ନିରାପତ୍ତା ନିମନ୍ତେ ସବିଶେଷ ବ୍ୟବସ୍ଥା ସେଥିରେ କରାଯାଇଥିଲା । ଅନ୍ୟ ବିପଦ ହେଲା, ମହାଜାଗତିକ ତେଜସ୍କ୍ରିୟତା । ଏ କ୍ଷେତ୍ରରେ ସୌର ଶିଖାର ଗଣନା ଅତି ତାତ୍ପର୍ଯ୍ୟ ଓ ଗୁରୁତ୍ୱପୂର୍ଣ୍ଣ । ତାର କାରଣ ହେଲା ପୃଥିବୀର ବିକିରଣ ବଳୟର ବାହାରେ ମହାକାଶଯାତ୍ରୀଙ୍କର ଅଙ୍ଗ ପ୍ରତ୍ୟଙ୍ଗରେ ମହାଜାଗତିକ ତେଜସ୍କ୍ରିୟତାର ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଛି ।

ମହାଶୂନ୍ୟରେ ଏବଂ ମହାକାଶଯାନ କକ୍ଷର ବାହାରେ ଲକ୍ଷ୍ୟ ସାଧନ ବିଗରେ ନିର୍ଦ୍ଦିଷ୍ଟ କର୍ମ ପନ୍ଥା ସ୍ଥିର ହୋଇ ପାରେ ବୋଲି ଆଲେକ୍‌ସି ଲିଓନୋଭ ପ୍ରମାଣ କରିଛନ୍ତି । କକ୍ଷ ପଥରେ ମହାକାଶ ଯାନର ସମାବେଶ, ମହାକାଶରେ ବନ୍ଦର ନିର୍ମାଣ, ମହାକାଶରେ ଗବେଷଣା, ଜ୍ୟୋତିଷ୍କମାନଙ୍କର ପୃଷ୍ଠ ଦେଶକୁ ଅବତରଣ କରିବାର ସମ୍ଭାବନା ଇତ୍ୟାଦି ମନଗଢ଼ା ବୈଜ୍ଞାନିକ ଗଳ୍ପ ଇତିହାସର ବିଷୟ ବସ୍ତୁ ହୋଇ ଅଳ ଆଉ ନାହିଁ ।

ମହାକାଶରେ ମନୁଷ୍ୟର ପ୍ରଥମ ପଦସଞ୍ଚାରକୁ ଆଉ ଏକ ନୂତନ ଦିଗରୁ ମଧ୍ୟ ବିଚାର କରିବାକୁ ପଡ଼ିବ । ତାହା ହେଉଛି ସୁଦୂର-ପ୍ରସାରୀ ଅନ୍ତର୍ଗ୍ରହମାନଙ୍କର ଯାତ୍ରା । ଆଜିର ମହାଶୂନ୍ୟରେ ଉଡ଼ିବା ଅନ୍ତର୍ଗ୍ରହ ଯାତ୍ରାଠାରୁ ବହୁ ଗୁଣରେ ଭିନ୍ନ । ଅନ୍ତର୍ଗ୍ରହ ମହାକାଶଯାନରେ ଡାକ୍ତରମାନେ ଅବଶ୍ୟ ରହି ପାରନ୍ତି, କାରଣ ଯେତେବେଳେ ଟେଲିମେଟ୍ରି ପ୍ରଚାର ପ୍ରବଳତା ଦେଖା ହେବ, ସେତେବେଳେ ସେ କ୍ଷେତ୍ରରେ ଆବଶ୍ୟକୀୟ ଇଲେକ୍‌ଟ୍ରୋଡ୍ ଓ ପିକ୍ ଅପ୍ ଡାକ୍ତର ଖଞ୍ଜିବେ । ତା ଛଡ଼ା ମେଡ଼ିକାଲ ଇଙ୍ଗିତସୂଚକକୁ ମାନସିକ ସନ୍ତତ ଲିପିବଦ୍ଧ କରିବାକୁ ହେବ । ଏ କ୍ଷେତ୍ରରେ ଗଣନା ଯନ୍ତ୍ରର ଆବଶ୍ୟକତା ବେଶି । ସୁତରାଂ ଗଣନା ଯନ୍ତ୍ର ଖଞ୍ଜା ହୋଇଥିବା ନିତ୍ୟାନ୍ତ ଉଚିତ୍ ।

ଆରୋହୀମାନଙ୍କର ସକଳ ପ୍ରକାର ଡାକ୍ତରୀ ପରୀକ୍ଷା ଲାଗି ଡାକ୍ତର ମାନଙ୍କୁ ବିଭିନ୍ନ ତଥ୍ୟ ସମ୍ବନ୍ଧରେ ସେଠାରେ ବିଶ୍ଳେଷଣ କରିବାକୁ ପଡ଼େ । ଏହି ଗଣନା ଯନ୍ତ୍ର ଯଥା ସମୟରେ ସ୍ୱାସ୍ଥ୍ୟର ଅବସ୍ଥାରେ ବିପଜ୍ଜନକ ତ୍ରୁଟିର ବିଚ୍ୟୁତି ଏବଂ ସଠିକ୍ ଭାବରେ ରୋଗ ନିର୍ଣ୍ଣୟ ଇତ୍ୟାଦିର ପ୍ରକାଶ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ । ଉପଯୁକ୍ତ ଚିକିତ୍ସା କରିବାରେ ମଧ୍ୟ ଏହି ଗଣନା ଯନ୍ତ୍ରର ସାହାଯ୍ୟ ନିଆଯାଇଥାଏ ।

ମହାଶୂନ୍ୟ ଅଭିଯାତ୍ରୀମାନଙ୍କର ନିରାପତ୍ତା ରକ୍ଷା କରିବା, ସଙ୍କେତ ପ୍ରେରଣ କରିବା, ଜରୁରୀ ଉଦ୍ଧାର କାର୍ଯ୍ୟ, ଅନ୍ନଯାନ ଯୋଗାଣ

ଇତ୍ୟାଦି ଜୀବ ବିଦ୍ୟାଗତ ନିୟନ୍ତ୍ରଣ କୌଶଳଗୁଡ଼ିକ ପ୍ରତ୍ୟକ୍ଷ ଭାବରେ ସେଥିରେ ସଂପୃକ୍ତ କରାଯାଇଛି । ଏ ସମସ୍ତ ସମସ୍ୟା ବୁଝିବାକୁ ଗଲେ ଅତି ଜଟିଳ ।

୧୯୬୫ ମସିହା ମାର୍ଚ୍ଚ ୧୮ ତାରିଖରେ ସୋଭିଏତ୍ ଏବଂ ବିଶ୍ୱ-ବିଜ୍ଞାନ ମନୁଷ୍ୟର ମହାବ୍ୟୋମ ବିଜୟ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେଇଥିଲା । ମହାକାଶଗତିକ ବିଜ୍ଞାନ, ଜୀବ ବିଦ୍ୟା ଓ ଡାକ୍ତରୀ ବିଦ୍ୟାର ବିକାଶ ପାଇଁ ଏହି ପଦକ୍ଷେପର ତାତ୍ପର୍ଯ୍ୟ ଅତି ମହାନ ଏବଂ ଗୁରୁତ୍ୱପୂର୍ଣ୍ଣ ।

ବହିଃଆକାଶର ଆବିଷ୍କାର ଓ ବିଜୟ କ୍ଷେତ୍ରରେ ସୋଭିଏତ୍ ଦେଶର ନାଗରିକମାନେ ଆଉ ଗୋଟିଏ ମହତ୍ ସଫଳତା ଅର୍ଜ୍ଜନ କରିଛନ୍ତି । ମହାକାଶଯାନ "ଭସ୍‌ଖୋଦ୍—୨"ର ଉଡ଼ିବାବସ୍ଥାର ଇତିହାସରେ ପ୍ରଥମ ଥର ପାଇଁ ଜଣେ ବ୍ୟକ୍ତି ମହାକାଶଯାନ ଛାଡ଼ି ବହିଃ ଆକାଶରେ ସନ୍ତରଣ କରିବାରେ ସକ୍ଷମ ହୋଇ ପାରିଛନ୍ତି; "ଏହା ଭସ୍‌ଖୋଦ୍—୨"ରେ ଥିବା ମହାକାଶଚାରୀମାନଙ୍କ ବୈଜ୍ଞାନିକ କୃତିତ୍ୱର ବିଶେଷ ତାତ୍ପର୍ଯ୍ୟ ।

ମହାକାଶରେ ଭ୍ରମଣ କୌଶଳ, ଶକ୍ତିଶାଳୀ ଏବଂ ନିଖୁଣ ଗଠନର ରକେଟ୍ ସର୍ବସମ୍ପୂର୍ଣ୍ଣ ମହାକାଶଯାନ । ସେଗୁଡ଼ିକରେ ଥିବା ସରଞ୍ଜାମ ଏବଂ ମହାକାଶ ଭ୍ରମଣରେ ନିରାପତ୍ତା ସ୍ଥିର କରୁଥିବା ପ୍ରଭୃତି କ୍ଷେତ୍ରରେ ସୋଭିଏତ୍‌ର ଉଚ୍ଚତର ଉତ୍କର୍ଷ ସାଧନର ପ୍ରମାଣ ପୃଥିବୀ ଆଉ ଥରେ ପାଇଲା ।

ପୂର୍ବ ଅଭିଯାନ-ମାନଙ୍କ ଭଳି "ଭସ୍‌ଖୋଦ୍—୨" ମହାକାଶ ଅଭିଯାନ ଶାନ୍ତି ଓ ପ୍ରଗତିର ସ୍ୱାର୍ଥ ସାଧିତ ହେବା ଦିଗରେ ଉଦ୍ୟମ କରୁଛି ।

ମହାବ୍ୟୋମ ବିଜୟ ହାସଲ ଇତିହାସରେ "ଭସ୍‌ଖୋଦ୍—୨" ଯାନ ଉଡ଼ିବା ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ମହାକାଶଯାନର

ଅଭ୍ୟନ୍ତରରୁ ମନୁଷ୍ୟର ବହିର୍ଗମନ ଏବଂ ଅନ୍ତରୀକ୍ଷରେ ମୁକ୍ତ ଭାବରେ ବିଚରଣ କରିବା ବେଳେ ସୋଭିଏତ୍ ଇଉନିୟନ ହିଁ ସଫଳତା ହାସଲ କରିଛି ।

ଏହି ମହାକାଶଯାନରେ ଟେଲିଭିଜନ୍‌ର ବ୍ୟବସ୍ଥା ଥିବା ହେତୁ ଧରା ବକ୍ଷର କେତେ କୋଟି ଜନତା ଆଜ ଲିଓନୋଭଙ୍କର ମହାକାଶ ଯାନରେ ପଦାର୍ପଣ କରିବା ଓ ଅଭ୍ୟନ୍ତରରୁ ପ୍ରତ୍ୟାବର୍ତ୍ତନ କରିବା ଅଦ୍ଭୁତ କାର୍ଯ୍ୟ ଦେଖିବାକୁ ସମର୍ଥ ହୋଇଥିଲେ ।

ପରମ୍ପରା ଅନୁଯାୟୀ ମସ୍କୋର ମହାକାଶଗୃଷ୍ଟା ଆଲେକ୍‌ସି ଲିଓ୍ୱୋନାଭେ ଓ ପାଭେଲ ବେଲ୍ୟାଏଭଙ୍କୁ ୧୯୬୫ ମସିହା ମାର୍ଚ୍ଚ ୨୩ ତାରିଖରେ ଜାତୀୟ ବିଶେଷତ ସମ୍ବର୍ଦ୍ଧନାଜ୍ଞାପନ କରାଯାଇଥିଲା । ସୋଭିଏତ୍ ସରକାରର ନେତାମାନେ ସେମାନଙ୍କୁ ସ୍ୱାଗତ କରିବା ପାଇଁ ଭ୍ନୁକ-ଭୋ ବିମାନ ବନ୍ଦରକୁ ଯାଇଥିଲେ ।

ମହାକାଶଗୃଷ୍ଟା ବେଲ୍ୟାଏଭ ସେଠାରେ କହିଲେ, "ଚନ୍ଦ୍ର, ମଙ୍ଗଳ, ଶୁକ୍ର ଏବଂ ସୌରମଣ୍ଡଳରେ ଥିବା ଅନ୍ୟାନ୍ୟ ଗ୍ରହକୁ ମନୁଷ୍ୟର ଅଭିଯାନ୍ନା କରିବାର ସମୟ ଖୁବ୍ ନିକଟ ହୋଇ ଗଲଣି । ଯେଉଁ ବୀର ଯବାନ ଦୁଇଜଣ ମହାକାଶଗୃଷ୍ଟା ରୂପେ ସାରା ପୃଥିବୀରେ ଖ୍ୟାତି ଅର୍ଜନ କଲେ ଓ ଏ ଦୁଇଜଣ ବୀର ପୁରୁଷ କଏ, ଆମର ଜାଣିବାକୁ ସ୍ୱତଃ ଆଗ୍ରହ ଜନ୍ମୁ ଥିବ ।"

## ସଂକ୍ଷିପ୍ତ ପରିଚୟ—

ମହାକାଶଯାନ : "ଭସ୍‌ଖୋଦ୍—୨" କମାଣ୍ଡର କର୍ଣ୍ଣେଲ ପାଭେଲ ଆଇଭା ନୋଭିଚ୍ ବେଲ୍ୟାଏଭ୍ ୧୯୨୫ ମସିହା ଜୁନ ୨୬ ତାରିଖରେ ରୁଷର ଚେଲିଷ୍ଟେଭୋ ଗ୍ରାମରେ ଜନ୍ମ ହୋଇଥିଲେ । ୧୯୪୯ ମସିହାରୁ ସେ ସୋଭିଏତ୍ ଇଉନିୟନ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ୧୯୨୩ରେ ସୋଭିଏତ୍ ସେନା ବାହିନୀର ବିମାନ ଚାଳନା ସ୍କୁଲରେ ଅଧ୍ୟୟନ କରିବା ପାଇଁ ଆବେଦନ କରିଥିଲେ । ତାଙ୍କର ଅନୁରୋଧ କ୍ରମେ ତାଙ୍କୁ ଗୋଟିଏ

ପାଇଲଟ୍ ସ୍କୁଲକୁ ପଠାଗଲା । ୧୯୪୫ରେ ସଫଳତାର ସହିତ ଉକ୍ତ ସ୍କୁଲ ଶିକ୍ଷା ସମାପ୍ତ କଲେ ।

୧୯୫୧ ମସିହାରେ ସେ ଦ୍ୱିତୀୟ ଶ୍ରେଣୀର "ବିମାନ ବାହିନୀ ପାଇଲଟ୍" ରୂପେ ଯୋଗ୍ୟତା ହାସଲ କଲେ । ୧୯୫୬ ମସିହାରେ ଦେଶର ସର୍ବଶ୍ରେଷ୍ଠ ପାଇଲଟ୍ କମାଣ୍ଡରମାନଙ୍କ ମଧ୍ୟରେ ଅନ୍ୟତମ ଭାବରେ ବିବେଚିତ ହୋଇ ପୁଣି ଅର୍ଡ଼ର ଅଫ୍ ଦି ରେଡ୍ ବ୍ୟାନର ବିମାନ ବାହିନୀର ଏକାଡ଼େମୀକୁ ଉଚ୍ଚ ଶିକ୍ଷା ଲାଭ କରିବା ପାଇଁ ତାଙ୍କୁ ପଠାଯାଇଥିଲା ଏବଂ ସେହି ବର୍ଷ ସେ ସ୍ନାତକ ହେଲେ ।

"ଜର୍ମାନୀ ଉପରେ ବିଜୟ ଲାଗି" "ଜାପାନ ଉପରେ ବିଜୟ ଲାଗି" ଏବଂ ଲଢ଼େଇ କାର୍ଯ୍ୟରେ ଦକ୍ଷତା ହାସଲ କରିଥିବା ଯୋଗୁ ବେଲ୍ୟାଏଭ୍ ଅର୍ଡ଼ର ଅଫ୍ ଦି ରେଡ୍ ଷ୍ଟାର ଉପାଧିରେ ଭୂଷିତ ହେବା ସଙ୍ଗେ ସଙ୍ଗେ ଅନେକ ମେଡ଼ାଲ ସେ ପାଇଛନ୍ତି ।

ପାଭେଲ୍ ଆଇଭା ନୋଭିଚ୍ ବେଲ୍ୟାଏଭ୍ ତାତ୍ୟାନା ଫିଲିପୋଭ୍ନା ବେଲ୍ୟାଏଭ୍ଙ୍କୁ ସେ ବିବାହ କରିଛନ୍ତି । ତାଙ୍କର ଦୁଇଟି ସନ୍ତାନ ମଧ୍ୟରୁ ବଡ଼ କନ୍ୟା ଇରିନାର ଜନ୍ମ, ୧୯୦୯ରେ ଏବଂ ୧୯୫୫ରେ କନିଷ୍ଠା କନ୍ୟା ଲ୍ୟୁଜ୍ ମିଲାରର ଜନ୍ମ ।

ମହାକାଶଚାରୀଙ୍କର ପିତା ବେଲ୍ୟାଏଭ୍ ଆଇଭାନ୍ ପାର୍ମେ ନୋଭିଚ୍ ଓ ମାତା ଆଗ୍ରାଫେନା ମିଖାଇଲୋଭ୍ନା ଯଥାକ୍ରମେ ୧୯୫୯ ଓ ୧୯୬୩ରେ ପ୍ରାଣତ୍ୟାଗ କରିଅଛନ୍ତି ।

ଦ୍ୱିତୀୟ ପ୍ରତିଭାବାନ୍ ବ୍ୟକ୍ତି ଲେଫ୍ଟନାଣ୍ଟ୍ କର୍ଣ୍ଣେଲ ଆଲେକ୍ସି ଆର୍ଖିପୋଭିଚ୍ ଲିଓନୋଭ ୧୯୩୪ ମସିହା ମେ ମାସ ୩୦ ତାରିଖରେ ରୁଷଦେଶର ଲିସ୍ତଭ୍ୟାଙ୍କା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ୧୯୫୭ ମସିହାଠାରୁ ସେ ସୋଭିଏତ ଇଉନିୟନ୍ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ଯୁବ କମ୍ୟୁନିଷ୍ଟ ଲିଗ୍ ତାଙ୍କୁ ବିମାନଚାଳନା ଶିକ୍ଷାଲାଭାର୍ଥେ ୧୯୫୩ ମସିହାରେ ଚୁଚୁଏଭ୍ ସାମରିକ ବିମାନ ଚାଳନା ବିଦ୍ୟାଳୟକୁ

ପଠାଇଲେ । ଲିଓନୋଭ ସେଠାରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ବିମାନବାହିନୀର ବିଭିନ୍ନ ଇଉନିଟ୍‌ରେ କାର୍ଯ୍ୟ କରି ଆସିଛନ୍ତି ।

ବିମାନ ଚାଳନାରେ ସଂଯମ ସୂକ୍ଷ୍ମ ବିଚାର ଏବଂ ଶୃଙ୍ଖଳା ଜ୍ଞାନ ପାଇଁ ଆଲେକ୍‌ସି ଆର୍କିପୋଭିଚ୍‌ଙ୍କୁ ତାଙ୍କର କମାଣ୍ଡରମାନେ ଉଚ୍ଚ ପ୍ରଶଂସା କରୁଥିଲେ । ୩ୟ ଶ୍ରେଣୀର ବିମାନଚାଳକ ରୂପେ ତାଙ୍କର ଯୋଗ୍ୟତା ଅଛି । ଲିଓନୋଭ ମଧ୍ୟ ପାରାସୁଟ୍ ମଧ୍ୟରୁ ଖୁବ୍ ବୀରତ୍ୱର ସହିତ ଲମ୍ଫଦାନ କରିପାରନ୍ତି । ସେ ୧୧୫ ଥର ପାରାସୁଟ୍ ଲମ୍ଫଦାନ କରିବା ହେତୁ ବିମାନବାହିନୀ ପାରାସୁଟ୍ ଆବତରଣ ତାଲିମ ଅନୁଷ୍ଠାନର ଶିକ୍ଷାଦାତା ଉପାଧିରେ ଭୂଷିତ ହୋଇଥିଲେ ।

ସେ ମହାକାଶଯାନ 'ଭସ୍‌ଖୋଦ୍-୨' ଚାଳକମାନଙ୍କ ମଧ୍ୟରେ ଅନ୍ୟତମ । ଏବଂ ମହାକାଶ ଅଭିଯାନର ଜଟିଳ କାର୍ଯ୍ୟଗୁଡ଼ିକୁ ସମ୍ପୂର୍ଣ୍ଣ-ରୂପେ ଆୟତ୍ତ କରିବା ଓ ତାର ବୈଜ୍ଞାନିକ ସମ୍ପର୍କରେ ବିଶେଷ ଜ୍ଞାନ ଅର୍ଜ୍ଜନ କରିଛନ୍ତି । ସେଥିପାଇଁ ସେ ସ୍ୱତନ୍ତ୍ର ତାଲିମ ମଧ୍ୟ ପାଇଛନ୍ତି ।

ସୈନ୍ୟବାହିନୀରେ ତାଙ୍କର ଉତ୍ତମ କାର୍ଯ୍ୟଯୋଗୁ ସେ "ଅର୍ଡ଼ର ଅଫ୍ ଦି ରେଡ଼୍ ଷ୍ଟାର" ଲାଭ କରିବା ସଙ୍ଗେ ଅନ୍ୟ କେତେକ ଉନ୍ନତକର କାର୍ଯ୍ୟ ଯୋଗୁ ୨ଟି ମେଡ଼ାଲ ପାଇଛନ୍ତି ।

ଆଲେକ୍‌ସି ଲିଓନୋଭ ସ୍ୱେତ୍‌ଲାନା ପାଭ୍‌ଲୋଭ୍‌ନା ଲିଓନୋଭଙ୍କୁ ବିବାହ କରିଛନ୍ତି । ତାଙ୍କର ଭିକ୍ଟୋରିଆ ନାମ୍ନୀ କନ୍ୟାଟିଏ ୧୯୬୧ ମସିହାରେ ଜନ୍ମ ହୋଇଛି ।

ମନୁଷ୍ୟ କେବେହେଲେ ଚିରନ୍ତନ ନୁହେଁ । ମାତ୍ର ତାହାର ବୀରତ୍ୱର କାର୍ଯ୍ୟ ଏ ଦୁନିଆରେ କେବଳ ଚିରନ୍ତନ ହୋଇପାରେ । ଏହି ବୀରପୁରୁଷ ଦୁହେଁ ଅସୀମ ସାହସର ସହିତ ଯେଉଁ ସୁଖ୍ୟାତି ଅର୍ଜ୍ଜନ କଲେ ତାହା ଏ ବିଶ୍ୱବାସୀଙ୍କ ମନରେ ନୂତନ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ମହାକାଶ ଭ୍ରମଣରେ ଏକ ନୂତନ ଅଧ୍ୟାୟ ଯେ ସୃଷ୍ଟି କଲେ ଏଥିରେ କାହାରି ଦ୍ୱିଧାମତ ନାହିଁ ।

---




ଅଧିକାଂଶ ସମୟରେ ମନୁଷ୍ୟ ସାମାନ୍ୟ ଆତ୍ମପ୍ରତିଷ୍ଠା ଲାଭ ଆଶାରେ ଜୀବନକୁ ଉତ୍ସର୍ଗ କରି ଦେଇଥିବାର ବହୁ ଦୃଷ୍ଟାନ୍ତ ଆଜକାଲି ଯୁଗରେ ଦେଖିବାକୁ ମିଳେ । ବିଶେଷକରି ଆମ ଜନ୍ମଭୂମିର ସାର୍ବଭୌମ ଅଖଣ୍ଡତା ରକ୍ଷା କରିବାକୁ ଯାଇଁ ଯେଉଁ ବୀର ଯବାନ୍ ମାନେ ଜନ୍ମଭୂମି ଉପରେ ନିଜର ଶରୀରକୁ ମାଟିରେ ମିଶାଇ ଦେଇଗଲେ, ଏହାଠାରୁ ବଳି ମନୁଷ୍ୟ ପକ୍ଷେ ଖ୍ୟାତି ଅର୍ଜ୍ଜନ କରିବା ଜଗତରେ ଆଉ କଣ ସମ୍ଭବ ହୋଇପାରେ ? ସେହିମାନଙ୍କର ଲହୁ ଲୁହ ଆଜି ଏ ଦେଶ ତଥା ଜାତିର ବଡ଼ ସମ୍ବଳ । ଆମ୍ଭେ ,ଦେଶବାସୀ ସେହି ମହାନ୍ ବ୍ୟକ୍ତିଙ୍କର ଅନ୍ତର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ବଳରେ

ବହୁଆ ହୋଇ ମାତୃଭୂମିର ସେବାରେ ବ୍ରତୀ ହୋଇ ନିଜକୁ ଧନ୍ୟ ମନେ କରୁଛୁ ।

ବେଶି ଦିନର ଘଟଣା ନୁହେଁ । ନିକଟ ଅତୀତରେ ଯୁଦ୍ଧର ଯେଉଁ ଉତ୍ତାବହ ପରିସ୍ଥିତି ଆମ ଦେଶରେ ଦେଖାଦେଲା, ତାହା ଏ ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ଭୁଲିଯାଇ ନଥିବେ । ସନ ୧୯୬୫ ମସିହା ଅଗଷ୍ଟ ୫ ତାରିଖରେ ପାକିସ୍ଥାନ ଆମ ଦେଶ ଉପରେ କାଶ୍ମୀର ଦଖଲ କରିବା ଉଦ୍ଦେଶ୍ୟରେ ଅତ୍ୟନ୍ତ ଭାବେ ଯେପରି ଆକ୍ରମଣ କଲା, ତାହା ଶୁଣିଲେ ଦେଶର କୌଣସି ବ୍ୟକ୍ତି ଧୈର୍ଯ୍ୟ ଧରି ରହି ପାରିବ ନାହିଁ । ନିଶ୍ଚୟ ତାର ରକ୍ତ ତାତି ଉଠିବ । ଦେଶ ତଥା ଜାତିପାଇଁ ପ୍ରାଣବଳୀ ଦେବାକୁ ସେ କେବେହେଲେ କୁଣ୍ଠାବୋଧ କରିବ ନାହିଁ ।

କିଛି ଜଣାନାହିଁ କି ଶୁଣାନାହିଁ, ହଠାତ୍ ପାକିସ୍ଥାନୀ ସୈନ୍ୟମାନେ ହାଜିପିର ଘାଟି ଦେଇ ଅତର୍କିତ ଭାବରେ ଭାରତ ଭିତରକୁ ପଶିଆସିଲେ । ଆମର ଯବାନ୍ ମାନେ ଏ ବିଷୟ ଆଦୌ ଜାଣିପାରି ନ ଥିଲେ । ତା ପୂର୍ବରୁ ଯଦି ସେମାନେ ଠିକ୍‌ଏ ସୂଚନା ପାଇଥାଆନ୍ତେ, ତେବେ ପାକିସ୍ଥାନୀ ଅନୁପ୍ରବେଶକାରୀମାନେ ସହଜରେ ଭାରତବର୍ଷ ଭିତରକୁ ପଶିପାରି ନଥାନ୍ତେ ।

ଭାରତବର୍ଷର କାଶ୍ମୀର ଅଞ୍ଚଳକୁ ପାକିସ୍ଥାନୀ ସୈନ୍ୟମାନେ ଦଖଲ କରି ନେବେ ବୋଲି ମନରେ ଯେଉଁ ଉଚ୍ଚାଭିଳାଷ ପୋଷଣ କରିଥିଲେ ତାହା ସମ୍ପୂର୍ଣ୍ଣ ପଣ୍ଡ ହୋଇଗଲା । ତା'ର ପ୍ରଧାନ କାରଣ ହେଲା ଜବାନମାନଙ୍କର ଅଦ୍ଭୁତ ଏବଂ ଅଭୁତପୂର୍ବ ରଣକୌଶଳ ପାଇଁ ।

ଆମ ଭାରତର ବିମାନବାହିନୀ ସୈନ୍ୟମାନେ କିପରି ସଫଳତାର ସହିତ ରଣାଭିମୁଖୀ ହୋଇ ଶତ୍ରୁ ପକ୍ଷର ଆକ୍ରମଣକୁ କିପରି ଭାବରେ ପ୍ରତିହତ କରି ବିଜୟ ହାସଲ କଲେ, ସେଥି ମଧ୍ୟରୁ କେବଳ ଗୋଟିଏ ଦିନର ଯୁଦ୍ଧର ଘଟଣା ଏଠାରେ ବର୍ଣ୍ଣନା କରାଯାଉଛି । ପାକିସ୍ଥାନୀ ସୈନ୍ୟମାନେ ହଠାତ୍ ଆମ ଦେଶ ଭିତରକୁ ମାଡ଼ି ଆସିଲେ । କମାଣ ଗୁଡ଼ିକରୁ

ଗୋଳାବୃଷ୍ଟି ହେଲା । ଉଡ଼ାଜାହାଜରେ ଉଡ଼ି ଆସି ଆକାଶରୁ ଥାଇ ଆମର ଦେଶର ବହୁତ ସହର ଓ ମଫସଲ ଅଞ୍ଚଳ ଗୁଡ଼ିକରେ ବୋମା ବର୍ଷଣ କଲେ । ଫଳରେ ଚତୁର୍ଦ୍ଦିଗ ଧୁ ଧୁ ହୋଇ ଜଳିବାକୁ ଲଗିଲା । ସେ ସେଉଁ କରୁଣ ଦୃଶ୍ୟ ଦେଖିବା ଦୂରେ ଥାଉ ତାହା ଶୁଣିବା ମାତ୍ରେ ଲୋକ ଅଭିଭୂତ ହେବ ।



ଯେତେବେଳେ ଆମ ଦେଶର ପ୍ରଧାନ ମାନେ ଜାଣିଲେ ଯେ ପାକସ୍ଥାନୀ ଅନୁପ୍ରବେଶକାରୀମାନେ କାଶ୍ମୀର ଦଖଲ କରିବା ଉଦ୍ଦେଶ୍ୟରେ ଭାରତକୁ ଛାରଖାର କରିବା ଉପରେ ବସିଲେଣି, ସେମାନେ ଆଉ ଧୈର୍ଯ୍ୟଧରି ରହି ପାରିଲେ ନାହିଁ । ସଙ୍ଗେ ସଙ୍ଗେ ରଣଭେରୀ ବାଜିଉଠିଲା ଓ ସେମାନେ ବଜାସ୍ତ୍ର ଟୀକା ପିନ୍ଧି ଅଣ୍ଟାଭିଡ଼ି ଯୁଦ୍ଧ ଯାତ୍ରାକୁ ବାହାରି

ପଡ଼ିଲେ । ଚାଲିଲା ଏଥର ମୁହାଁମୁହିଁ ସଂଗ୍ରାମ । ଏଥର ସେମାନେ ଅଉ ପଳାଇ ଯିବେ କୁଆଡ଼େ ?

ସାଧାରଣ ଅସ୍ତ୍ର ଶସ୍ତ୍ର ବଳରେ ଯେ ଯୁଦ୍ଧ ଚାଲିଲା ତାହା ନୁହେଁ । କମାଣ, ଗୁଳି, ଗୋଳା, ବାରୁଦ, ମେସିନଗନ, ପେଟନ୍ ଟ୍ୟାଙ୍କ ଓ ବୋମିଂ ଜାହାଜ ପ୍ରଭୃତି ଅତି ଭୀଷଣ ଏବଂ ମାରାତ୍ମକ ଅସ୍ତ୍ର ଶସ୍ତ୍ର ସାହାଯ୍ୟରେ ଯୁଦ୍ଧ ଚାଲିଲା । ଶୁଣିଲେ ଲୋମ ଟାଙ୍କୁରି ଉଠୁଛି । ଦେହରୁ ରକ୍ତ ଶୁଖି ଯାଉଛି ଓ ଅଙ୍ଗପ୍ରତ୍ୟଙ୍ଗ ଅବଶ ହୋଇଯାଉଛି ।

ଆମ ଦେଶର ବୀର ଯବାନ୍‌ମାନଙ୍କ ମଧ୍ୟରୁ ଯେଉଁମାନେ ମାତୃଭୂମିର ଅଖଣ୍ଡତା ରକ୍ଷା କରିବାକୁ ଯାଇ ବୀରତ୍ୱର ସହିତ ଶତ୍ରୁପକ୍ଷର ସୈନ୍ୟମାନଙ୍କୁ ହତ କରି ଶେଷରେ ଆତ୍ମବଳି ଦେଇଛନ୍ତି, ସେମାନଙ୍କ ମଧ୍ୟରେ ବ୍ରିଗେଡ଼ିୟର୍ ରାଜେନ୍ଦ୍ର ସିଂହ ଅନ୍ୟତମ ।

ଶତ୍ରୁ ଆଜି ଆମ ଜନ୍ମଭୂମିର ପବିତ୍ର ଦେହରେ ବର୍ବରୋଚିତ ଭାବରେ ହାତ ଲଗାଇ ଦେଇଛି । ହିଂସା ଓ ଗର୍ବରେ ଆମର ସୀମା ଲଙ୍ଘନ କରି ଦେଶ ଭିତରେ ରକ୍ତ ଝଡ଼ ସୃଷ୍ଟି କରିଛି । ଦେଖାଯାଉ, ଆଜି ଯୁଦ୍ଧରେ କେ ହେବ ବଳୀୟାନ । ଆମ ଯବାନ୍‌ମାନେ ନିଜର ସୀମା ଅତିକ୍ରମ କରି ଆଗକୁ ଟିପେ ଯିବେ ନାହିଁ ବୋଲି ଆଗରୁ ପ୍ରତିଜ୍ଞା କରିଥିଲେ । ମାତ୍ର ସେ ଦୃଢ଼ ପ୍ରତିଜ୍ଞାକୁ ଏବେ ଖଣ୍ଡନ କରିବାକୁ ସେ ବାଧ୍ୟ ହେବେ । କାରଣ ମାତୃଭୂମିର ସମ୍ମାନ ରକ୍ଷା କରିବା ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଦେଶବାସୀ ସେମାନଙ୍କ ଉପରେ ଆଶା ଭରସା ରଖି ଆଜି ଏଭଳି ଏକ ଗୁରୁଦାୟିତ୍ୱ ଦେଇଛନ୍ତି । ଏଥିପାଇଁ ସେମାନେ ଶପଥ ମଧ୍ୟ ନେଇଛନ୍ତି । ଏ କ୍ଷେତ୍ରରେ ସେମାନେ ଯଦି ହାରି ଯାଉଛନ୍ତି ବା ଆତ୍ମସମର୍ପଣ କରୁଛନ୍ତି, ଏହା ଦେଶ ତଥା ଜାତି ପକ୍ଷେ ପରାଧୀନତା ସ୍ୱୀକାର କରିବା ଅନିବାର୍ଯ୍ୟ ।

ଏଇଭଳି କେତେ କଥା କଣ ବ୍ରିଗେଡ଼ିୟର୍ ରାଜେନ୍ଦ୍ର ସିଂହ ମନରେ ଭାବିଲେ । ଏତିକିବେଳେ ମଧ୍ୟ ତାଙ୍କର ମନେ ପଡ଼ିଲା ନିଜର ଜନ୍ମସ୍ଥାନ ଗାଁ ଟିର କଥା । ସେ ଯୁଦ୍ଧରେ ବିଜୟ ହାସଲ କରି କେବେ

ଘରକୁ ଫେରିବେ, ଏଇ ଚିନ୍ତା ସବୁବେଳେ ତାଙ୍କ ମନ ଭିତରେ ଆନ୍ଦୋଳନ ସୃଷ୍ଟି କରୁଥାଏ । ବାପ, ମାଆ, ଭାଇ, ବନ୍ଧୁ ବାନ୍ଧବ, ସାଙ୍ଗସାଥୀ ସ୍ତ୍ରୀ ଓ ପିଲା ଝିଲା ସମସ୍ତେ ତାଙ୍କୁ ଦେଖିବାକୁ ଅପେକ୍ଷା କରି ବସିଥିବେ । ଯୁଦ୍ଧରୁ ସେ କେବେ ଫେରିଲେ ତାଙ୍କୁ ସମସ୍ତେ ସ୍ନେହରେ ଆଲିଙ୍ଗନ କରିବେ । ପିଲାମାନେ ସନ୍ଧ୍ୟାରେ ଘରକୁ ଫେରି ମାଆଙ୍କୁ ଆସି ପଚାରୁଥିବେ, "ମା' ! ବାପା ଆମର ଶତ୍ରୁକୁ ବିନାଶ କରି କେବେ ଘରକୁ ଫେରିବେ ? ବାଟରେ ଏଇ ଭଳି କେତେ କଅଣ ଘର କଥା ସମସ୍ତ ମନରେ ପଡ଼ି ମନଟା ତାଙ୍କର ଘାଣ୍ଡି ଚକଟି ହେଲା । ନୟନରୁ ଅଶ୍ରୁଧାର ଗଡ଼ିବାକୁ ଲାଗିଲା । ମନେ ମନେ ସେ ଭାବୁଥାଆନ୍ତି । "ହଁ, ମୁଁ ନିଶ୍ଚୟ ଫେରିବି, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।"

ହମେ ଉପ୍ପର ଗଜେନ୍ଦ୍ର ସିଂ ମାତୃଭୂମିର ଦୁଃଖ ଦୁର୍ଦ୍ଦଶା ମୋଚନ କରିବା ନିମିତ୍ତ ଆଜ ପ୍ରତିଜ୍ଞାବଦ୍ଧ । ପଛିଲେ ଯୁଦ୍ଧ ଭୂଇଁରେ ତାଙ୍କ ଜୀବନ ତାଙ୍କୁ ଦେଖିବାକୁ ପଡ଼ିବ । ଏସବୁ ବୃଥା ଭାବନା ମନରେ ଆଣି ଲାଭ ବା କ'ଣ ? ମନରେ ପଡ଼ିଲା ଶୁଣିଆଡେ ତାଙ୍କର ହଜାର ହଜାର ଶିଶୁ ବୋମା ମାଡ଼ରେ ମରିଯାଇଥିବା କଥା । କେତେ ଶିଶୁଙ୍କର ମାଆ ଯେ ବିକଳ ହୋଇ କାନ୍ଦୁଥିବେ, ଏଇ କଥା ତାଙ୍କର ମନେ ପଡ଼ିଲା ବେଳକୁ ହୃଦୟ ବିଦାରି ହେଉଥାଏ । ଆଜ ହଜାର ହଜାର ଶିଶୁଙ୍କର ପ୍ରାଣ ରକ୍ଷିବା ତାଙ୍କ ଉପରେ ନିର୍ଭର କରେ । ଭୀଷ୍ମଙ୍କ ପ୍ରତିଜ୍ଞା ଭଳି କଳେ ବଳେ କୌଶଳେ ଯେପରି ହେଉ ସେ ଆଜ ଯୁଦ୍ଧ କ୍ଷେତ୍ରରେ ଶତ୍ରୁକୁ ବିନାଶ କରି ତାଙ୍କ ରକ୍ତକୁ ଟୀକା ଘେନିବେ । ସେଥିପାଇଁ ଆଉ ବିଳମ୍ବ ନକରି କେମ୍ପରୁ ବାହାରି ଗଲେ ରଣକ୍ଷେତ୍ରକୁ ।

ଓଃ, କି ଭୟଙ୍କର ଶବ୍ଦ । ଅବିରାମ ଭାବରେ ତୋପ ମୁହଁରୁ ଗୁଳି ବୃଷ୍ଟି ଚାଲିଛି । ଗାଁ ଗଣ୍ଡା, ସହର, ବିଲ ବାଡ଼ି, ବଣ, ଜଙ୍ଗଲ, ଚତୁର୍ଦ୍ଦିଗ ଧୂ ଧୂ ହୋଇ ଜଳୁଛି । ନିଆଁର ଉତ୍ତାପରେ ଲୁହା ଭଳି କଠିନ ପଦାର୍ଥ ମଧ୍ୟ ତରଳି ଯାଉଛି । ନିଆଁର କରାଳରୂପି ସ୍ରୋତରେ ଗଗନ ପବନ ସବୁ ରୁଦ୍ଧ ହୋଇଗଲାଣି ।

ବର୍ତ୍ତମାନ ସେମାନଙ୍କର ଆକାଶମାର୍ଗରେ ଗତି କରୁଛି କେତେଖଣ୍ଡି ବୋମିଂ ଯୁଦ୍ଧ-ଜାହାଜ । ସେମାନଙ୍କର ଦଳପତି ବୀର ଯବାନ୍ ବ୍ରିଗେଡ଼ିୟାର୍ ରାଜେନ୍ଦ୍ର ସିଂହ । ଜାହାଜ ମଧ୍ୟରେ ତାଙ୍କର ଅଧୀନସ୍ଥ ହାବିଲଦାର ଓ କେତେଜଣ ସିପାହୀ ଥାଆନ୍ତି । ନିଆଁ ଧୂଆଁର ଲହଡ଼ି ମଧ୍ୟରେ ତାଙ୍କର ଜାହାଜଟି ସୁଅ କାଟି ବୁଲୁଥାଏ । ବ୍ରିଗେଡ଼ିୟାର ବୀର ଯବାନ୍ ରାଜେନ୍ଦ୍ର ସିଂହ ଆକାଶ ମାର୍ଗରୁ ଥାଇ ଯୁଦ୍ଧର ଗତିବିଧି ଲକ୍ଷ୍ୟ କରୁଥାଆନ୍ତି । ସେତେବେଳେ ତାଙ୍କର ଦେହର ଶିରା ପ୍ରଶିରାରେ ଉଷ୍ଣ ରକ୍ତ ପ୍ରବାହିତ ହେଉଥାଏ । ଦୀର୍ଘ ନିଶ୍ୱାସ ଚାଲୁଥାଏ । ମନରେ କି ଅପୂର୍ବ ବଳ । ପାଖରେ ଯବାନ୍‌ମାନେ ଆଦେଶ ପାଇବାମାତ୍ରେ ବୋମିଂ କରିବାକୁ ପ୍ରସ୍ତୁତ । ସେମାନେ ସମସ୍ତେ ଗମ୍ଭୀର ଓ ସ୍ଥିର । ଦେଶରକ୍ଷା ନିମିତ୍ତ ପ୍ରାଣବଳୀ ଦେବାକୁ ଏମାନେ ବର୍ତ୍ତମାନ ପ୍ରସ୍ତୁତ ।

ସେତେବେଳେ ପୁଞ୍ଚ, ବଡ଼ମୂଳ, ରାମପୁର ପ୍ରଭୃତି ଅଞ୍ଚଳରେ ଖଣ୍ଡଯୁଦ୍ଧ ଲାଗିରହିଛି । କିନ୍ତୁ କାଶ୍ମୀର ଥିଲା ଅତି ଦୁର୍ଭେଦ୍ୟ । ତାକୁ ଦଖଲ କରିବା ଶତ୍ରୁ ସୈନ୍ୟଙ୍କ ଶକ୍ତିର ବାହାରେ । କାଶ୍ମୀରକୁ ରକ୍ଷା କରିବା ଦାୟିତ୍ୱରେ ଅନ୍ୟାନ୍ୟ ଯେଉଁ ସୈନ୍ୟବାହିନୀ ଥିଲେ, ବିଶେଷ କରି ଆକାଶବାହିନୀର ସୈନ୍ୟମାନେ ବୀରତ୍ୱର ପରିଚୟ ଦେଇଥିଲେ ।

ବ୍ରିଗେଡ଼ିୟାର୍ ଯବାନ୍ ରାଜେନ୍ଦ୍ର ସିଂହ ଉପରୁ ଥାଇଁ ଦେଖିଲେ ଯେ, ତଳେ ରାସ୍ତା ଉପରେ ଧାଡ଼ିଏ ତୈଳବାହୀ ପେଟନ୍‌ଟ୍ୟାଙ୍କ ଧାଇଁଛନ୍ତି । ଯେଉଁଗୁଡ଼ିକୁ ବର୍ତ୍ତମାନ ନଷ୍ଟ କରି ନ ଦେଲେ ସେ ଶତ୍ରୁ ସୈନ୍ୟଙ୍କୁ ଜୟ କରିବା ବଡ଼ ମୁସ୍କିଲ ହେବ । କିନ୍ତୁ କିପରି ନଷ୍ଟ କରିବେ, ସେ ବିଷୟରେ ମଧ୍ୟ ଅଧିକ ଚିନ୍ତା କରିବାକୁ ଆଉ ତାଙ୍କର ସମୟ ନାହିଁ ।

ବିମାନ ଦିଗ୍‌ଦର୍ଶକ ବୀରଯବାନ୍ ରାଜେନ୍ଦ୍ର ସିଂହ ଖୁବ୍ ସାହସ ଓ କୌଶଳର ସହିତ ଶତ୍ରୁପକ୍ଷର ବିମାନଧ୍ୱଂସୀ କମାଣ ଆଡ଼େଇ ତାଙ୍କ ବିମାନକୁ ବାହାର କରି ନେଇ ଯାଇଥିଲେ । ଭୂପୃଷ୍ଠର ସୁସ୍ପଷ୍ଟ ଚିତ୍ର କଳନା କରିବାକୁ ତାଙ୍କ ବିମାନଟିକୁ ବସ୍ତୁତଃ ସେଠାରେ ବୋଳ ଖେଳାଇବାକୁ ପଡ଼ୁଥିଲା ।

'ସ୍ଥିର ହୋଇ ରହ', ଗଜେନ୍ଦ୍ର ସିଂହ ଆଦେଶ ଦେଲେ । କିନ୍ତୁ ତାଙ୍କ ବିମାନ ଉପରୁ ଓ ତଳୁ ମାଡ଼ ଆସିଲା ଶକ୍ତିଶାଳୀ ମେସିନ୍‌ଗନ୍ ଓ ସବ୍ ମେସିନ୍‌ଗନ୍‌ରୁ କମାଣର ଗୁଳିଗୁଡ଼ିକ । ତଥାପି ବିମାନ ତାଙ୍କର ବିଚଳିତ ହେଲା ନାହିଁ । ବିମାନରୁ ଅଧିକ ବୋମା ନିକ୍ଷେପ କଲେ ଶତ୍ରୁମାନଙ୍କ ଟ୍ୟାଙ୍କଗୁଡ଼ିକ ଉପରକୁ । ଗୋଟାକ ପରେ ଗୋଟାଏ ଭୀଷଣ ଶବ୍ଦ ସହ ବିସ୍ଫୋରଣ ଚାଲିଲା । ବିସ୍ଫୋରଣ ଫଳରେ ଚତୁର୍ଦ୍ଦିଗରେ ବାଲିଝଡ଼ ସୃଷ୍ଟି ହେଲା । ଆଉ କିଛି ଦେଖାଗଲା ନାହିଁ । କେତେକ ପେଟନ୍‌ଟ୍ୟାଙ୍କ୍ ସେଠାରେ ଚୂରମାର ହୋଇଗଲା । ଟ୍ୟାଙ୍କଗୁଡ଼ିକର ଚାଳକଙ୍କ ସମେତ ଅନେକ ସୈନ୍ୟ ସେଠାରେ ମରି ଶୋଇଲେ । ଆଉ କେତେକ ଟ୍ୟାଙ୍କ ଖସି ପଳାଇ ଗଲାବେଳେ ବାଲିଝଡ଼ ଭିତରେ ପ୍ରାଣ ହରାଇଲେ ।

"କ'ଣ ଏଥର ଉପରକୁ ଉଠିଯିବା ?"
"ହଁ, ଫିଲ୍‌ଡର ଲେଫ୍‌ଟନ୍ୟାଣ୍ଟଙ୍କୁ ଦୃଷ୍ଟି ଦେଇଯିବା ।"
"ଟ୍ୟାଙ୍କଗୁଡ଼ିକର ଅବସ୍ଥା ବର୍ତ୍ତମାନ କପରି ଅଛି ?"
ଉତ୍ତର ମିଳିଲା, "ସେଗୁଡ଼ିକ ସମୂଳେ ନଷ୍ଟ ହୋଇ ଯାଇଛି ।"

ଏମାନେ ସମସ୍ତେ କାଶ୍ମୀର ରକ୍ଷା କରିବାକୁ ଯାଇ ଶତ୍ରୁକୁ ବିନାଶ କରିବା ନିମନ୍ତେ ବଦ୍ଧପରିକର । ନିର୍ଦ୍ଦିଷ୍ଟ ବ୍ୟବଧାନ ରକ୍ଷା କରି ଲେଫ୍‌ଟନ୍ୟାଣ୍ଟଙ୍କୁ ବାଟ କଢ଼ାଇ ଆଣିବା ପାଇଁ ପୁନର୍ବାର ଏମାନଙ୍କର ଜାହାଜଟି ଲକ୍ଷ୍ୟସ୍ଥଳରେ ପହଞ୍ଚି ସାଇଥିଲା ।

ବିଗ୍‌ଡର୍ଶକ ଜଣାଇଲେ ଯେ, ବୋମା ନିକ୍ଷେପ ଦ୍ୱାରା ନଷ୍ଟ ହୋଇଚାଲି ।। ବ୍ରିଗେଡ଼ିୟାର ଅସୁବିଧାରେ ପଡ଼ିଥିବାର ଦେଖି ଫ୍ଲାଇଟ୍ କମାଣ୍ଡର ତାଙ୍କୁ ରେଡ଼ିଓ ବାର୍ତ୍ତାଯୋଗେ ଆଦେଶ ଦେଲେ ଯେ, ସ୍ୱାଧୀନ-ଭାବରେ ଅବସ୍ଥା ପରିବର୍ତ୍ତନ କର ।

ଏଥିରେ ବ୍ରିଗେଡ଼ିୟାର ତାଙ୍କର ଅବସ୍ଥା ପରିବର୍ତ୍ତନ କରିବା ଫଳରେ ବିମାନବିରୋଧୀ କମାଣର ଗୁଳିବର୍ଷଣ ସୀମା ଅତିକ୍ରମ କରିବା ଦ୍ୱାରା ଶତ୍ରୁ ସୈନ୍ୟଙ୍କ ସମ୍ମୁଖୀନ ହୋଇଗଲେ । ପୁନଶ୍ଚ ଯୁଦ୍ଧ ଚାଲିଲା ।

ଏଥର ଶତ୍ରୁପକ୍ଷଙ୍କୁ ପରାହତ କରିବା ନିମନ୍ତେ ପୁଣି ଏକ ବୋମା ବିସ୍ଫୋରଣ କଲେ ।

ଏତିକିବେଳେ ଶତ୍ରୁ ସୈନ୍ୟଙ୍କ ମେସିନ୍‌ଗନ୍‌ରୁ ଗୋଟାଏ ଗୁଳି ଆସି ତାଙ୍କ ମୁଣ୍ଡରେ ହଠାତ୍ ବାଜିଲା । ସତେ ଯେପରି ସେହି ଗୁଳିଟି ତାଙ୍କ ବିଜୟର ଚିହ୍ନ ସଦୃଶ ତାଙ୍କ ମୁଣ୍ଡରେ ଆସି ଟୋପିଟାଏ ଭଳି ଲାଗିଗଲା । ବ୍ରିଗେଡ଼ିୟର ରାଜେନ୍ଦ୍ର ସିଂହ ସାହସର ସହିତ ଶତ୍ରୁପକ୍ଷର ଯେଉଁ ଶକ୍ତିଶାଳୀ ସେଟେନ୍ ଟ୍ୟାଙ୍କ୍‌ଗୁଡ଼ିକୁ ନଷ୍ଟ କରିଦେଲେ, ତାଙ୍କପକ୍ଷେ ଏହା ଅସୀମ ସାହସ ଓ ବୀରତ୍ୱର ପରିଚୟ । ସେ ଏକା କାହିଁକି, ଯେ କୌଣସି ଦେଶର ସୈନ୍ୟମାନଙ୍କ ପକ୍ଷେ ଏହା ଗର୍ବ ଅନୁଭବ କରିବାର କଥା । ଏହି ତା'ର ପ୍ରଧାନ ଗୁଣ ବୈଶିଷ୍ଟ୍ୟ । ଚନ୍ଦ୍ରମାକୁ ରାହୁଗ୍ରାସ କଲାପରି ରାଜେନ୍ଦ୍ର ସିଂହଙ୍କୁ ନିମନ୍ତ୍ରଣ ଆସିଲା ଯମରାଜାଙ୍କ ଦରବାରରୁ । ଏଥିରେ ବିମାନର ଇଞ୍ଜିନରେ ହଠାତ୍ ନିଆଁ ଲାଗିଗଲା । ନିଆଁ ଗୁଡ଼ିକ ପାଇଲଟ୍ କ୍ୟାବିନ ଭିତରକୁ ମାଡ଼ି ଆସିଲା । ଘନ ଧୂଆଁରେ କିଛି ଦେଖାଗଲା ନାହିଁ । କିନ୍ତୁ ଯବାନ୍ ରାଜେନ୍ଦ୍ର ସିଂହ ଧୈର୍ଯ୍ୟଚ୍ୟୁତ ନ ହୋଇ ହ୍ୱିଲକୁ ଧରିଥାଆନ୍ତି । ସଙ୍ଗେ ସଙ୍ଗେ ସିପାହୀମାନଙ୍କୁ ନିର୍ଦ୍ଦେଶ ଦେଲେ, 'ଜଲଦି କାହିଁକି ? ଆଗେଇ ଚାଲ ।' ସେ ବିମାନଟିକୁ ଉଡ଼େଇ ପଳାଇବା ଭଙ୍ଗୀରେ ରାସ୍ତା ଉପରେ ଆଉ କେତେକ ଧାଉଁଥିବା ଟ୍ୟାଙ୍କ୍ ଉପରେ ବୋମା ନିକ୍ଷେପ କଲେ । ଏଥର ପ୍ରକାଣ୍ଡ ବିସ୍ଫୋରଣରେ ଗଗନ ପବନ ଥରି ଉଠିଲା । ଭୂପୃଷ୍ଠରୁ ମୃତ୍ତିକା ସ୍ତୂପମାନ ଆକାଶକୁ ଉଠିଲା । ଟ୍ୟାଙ୍କ୍ ଓ ତାହାର ଭିତରେ ଥିବା ଚାଳକମାନେ ବିକଳରେ ପ୍ରାଣ ଘେନି ପଳାଇଗଲେ ।

ଏହିପରି ସାହସର ସହିତ ବିଜୟ ହାସଲ କରିବା ପରେ ବୀର ଜବାନ୍ ବ୍ରିଗେଡ଼ିୟର ରାଜେନ୍ଦ୍ର ସିଂହ ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେଇଥିଲେ । ଆହାଃ କି ମର୍ମନ୍ତୁଦ ଘଟଣା । ରାଜେନ୍ଦ୍ର ସିଂ ଭଳି ଜଣେ ବୀର ଯବାନଙ୍କୁ ଦୁର୍ଭାଗ୍ୟବଶତଃ ଆମେ ହରାଇଥିଲୁ ସତ କିନ୍ତୁ ଏହା ଦେଶ ଜାତି ପକ୍ଷେ ଏକ ଅପୂରଣୀୟ କ୍ଷତି । ସେ ଥିଲେ ଆମ ଭାରତର ଜଣେ ନିର୍ଭୀକ ବୀର ସୈନିକ ।

ଯୁଦ୍ଧକ୍ଷେତ୍ରରେ ଏଭଳ ବିପଜ୍ଜନକ ଅବସ୍ଥାରେ ପଡ଼ି ଯେତେବେଳେ କୌଣସି ଯବାନ ଅନ୍ଧକାର ମଧ୍ୟରେ ଘାଣ୍ଟି ହେଉଥିବେ, ସେତେବେଳେ ବ୍ରିଗେଡ଼ିୟର ରାଜେନ୍ଦ୍ର ସିଂହଙ୍କର ଏହି ସାହସ ଓ ବୀରତ୍ୱ କଥାକୁ ମନେ ପକାଇଲେ ତାଙ୍କୁ ସବୁ ବାଟ ପରିଷ୍କାର ଦେଖାଯିବ ।

ଏ ଯୁଦ୍ଧରେ ପାକିସ୍ଥାନର ପରାଜୟ ହେଲା । ଟ୍ବ୍ ଅଲ୍ଲୁଡନ ପରେ ପରେ ସେପ୍ଟେମ୍ବର ମାସ ୨୨ ତାରିଖରେ ଯୁଦ୍ଧବିରତି ଘୋଷଣା ହେଲା । ରାଜେନ୍ଦ୍ର ସିଂହ ଆଜି ଧରାଧାମରେ ଆଉ ନାହାନ୍ତି ମାତ୍ର ସେ ମାତୃଭୂମିର ଅଖଣ୍ଡତା ରକ୍ଷା କରିବାକୁ ଯାଇ ଯୁଦ୍ଧ କ୍ଷେତ୍ରରେ ପ୍ରାଣବଳି ଦେଇଥିବାରୁ ଆମର ମହାମାନ୍ୟ ରାଷ୍ଟ୍ରପତି ତାଙ୍କୁ ମହାବୀର ଚକ୍ର ଉପାଧିରେ ଭୂଷିତ କରିଛନ୍ତି । ତାଙ୍କର ସାହସ ଓ ବୀରତ୍ୱପୂର୍ଣ୍ଣ ରଣକୌଶଳ ଯେ ଆମ ଦେଶର ଯବାନମାନଙ୍କ ମନରେ ଉତ୍ସାହ ଓ ଉଦ୍ଦୀପନା ଆଣି ଦେବ, ଏଥିରେ ସନ୍ଦେହ ନାହିଁ ।

---



# ଅତଳ ସାଗର ଗର୍ଭରେ ବିଚରଣ

ଦିନ ଥିଲା ମନୁଷ୍ୟ କଥା କହିବାଠାରୁ ଆରମ୍ଭ କରି ଖାଦ୍ୟ ଓ ବସବାସ କରିବା ପର୍ଯ୍ୟନ୍ତ କୌଣସି ବିଷୟ ଜାଣି ନ ଥିଲା । ସେ ଜାଣିଥିଲା କେବଳ ଫଳମୂଳ ଭକ୍ଷଣ, ବଳ୍କଳ ବସନ ପରିଧାନ ଓ ଭିନ୍ନ ଭିନ୍ନ ପ୍ରକାର ଇଙ୍ଗିତ ବା ଠାର । ଏ କେତୋଟି ବିଷୟର ମାଧ୍ୟମରେ ସେ ତାର ଜୀବିକା ନିର୍ବାହ କରୁଥିଲା । ଆଜିର ମନୁଷ୍ୟ ସେ କାଳର ମନୁଷ୍ୟଠାରୁ କେତେ ଯେ ତଫାତ୍ ତାହା କଳନା କରିହେବ ନାହିଁ ।

ମନୁଷ୍ୟ ସଦାସର୍ବଦା ଅନୁସନ୍ଧିତ୍ସୁ । ସେ ସବୁବେଳେ ଯେ କୌଣସି ବିଷୟ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବାକୁ ଚିନ୍ତାକଲା । ମନୁଷ୍ୟ ତାର ଇଚ୍ଛା ଓ ପ୍ରୟୋଗ ବଳରେ ସେ ଆଜି ଦୁନିଆରେ ସବୁ କାର୍ଯ୍ୟ ହାସଲ କରିବାରେ ସମର୍ଥ ହୋଇ ପାରିଛି । ଆମେ ଆଜିକାଲି ସ୍ଥଳଭାଗରେ ମଟର, ରେଲ ଓ ଆକାଶ ମାର୍ଗରେ ଉଡ଼ାଜାହାଜ ଓ ରକେଟ ପ୍ରଭୃତି ଯାହା ଦେଖୁଥାଇ ତାହା ସମସ୍ତ କେବଳ ମନୁଷ୍ୟର ଜିଜ୍ଞାସା, ଚେଷ୍ଟା ଓ କଠୋର ସାଧନା ମୂଳରେ ନିହିତ । ଏ ଯୁଗର ମଣିଷକୁ ଆଜି କୌଣସି ବିଷୟ ଅଜଣା ନାହିଁ । ସ୍ଥଳଭାଗ ଓ ଆକାଶମାର୍ଗ କଥା ଆମ ଦୃଷ୍ଟିରେ

ପଢ଼ୁଛୁ ବୋଲି ଯିନା ସେ ସମ୍ବନ୍ଧରେ ଆମେ ସବୁ ଜାଣି ପାରୁନୁ । କିନ୍ତୁ ଏହା ବ୍ୟତୀତ ଅନ୍ୟ ଏକ ଜଳଭାଗଟି ଯେ ରହିଛି ତା ବିଷୟରେ ମଧ୍ୟ ମନୁଷ୍ୟ ବହୁ ତଥ୍ୟ ସଂଗ୍ରହ କରି ପାରିଛି । ମନୁଷ୍ୟ ତାର ଜିଜ୍ଞାସା ବଳରେ ପ୍ରବଳ ଉଦ୍ୟମ, ଅଦମ୍ୟ ଉତ୍ସାହ ଏବଂ ସାହସ ଦ୍ୱାରା ଅତଳ ସାଗର ଗର୍ଭର ବିବରଣୀ ଜାଣି ପାରିଲା । ମନୁଷ୍ୟ ପ୍ରଥମେ କିପରି ଭାବରେ ଅତଳ ସାଗର ଗର୍ଭକୁ ଯାଇ ତଥ୍ୟ ସଂଗ୍ରହ କଲା ସେ ବିଷୟ ଜାଣିଲେ ଆମେ ଆଶ୍ଚର୍ଯ୍ୟ ହେବା । ମନୁଷ୍ୟ ତାର ଏହି କଳ୍ପନାତୀତ କାର୍ଯ୍ୟକୁ କିପରି ଭାବରେ କାର୍ଯ୍ୟକାରୀ କରିଛି ସେ ବିଷୟରେ ଖୁବ୍ ସଂକ୍ଷେପରେ ଏଠାରେ ବର୍ଣ୍ଣନା କରାଗଲା ।

ଜର୍ମାନ ଦେଶର ବିଖ୍ୟାତ ଫ୍ରେଡରିକ୍ କୌଣସି ଏକ ଦିନେ ସୁନାର ନିର୍ମିତ ହୋଇଥିବା ମୂଲ୍ୟବାନ କପ୍‌ଟିଏ ସମୁଦ୍ର ଗର୍ଭକୁ ଫିଙ୍ଗିଦେଲେ । ଏହା ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ମହାମାନ୍ୟ ସମ୍ରାଟ ! ଆମ୍ଭମାନେ ଏହାର ରହସ୍ୟ ତ କିଛି ବୁଝି ପାରୁନାହୁଁ । ଏହାର କାରଣ କ'ଣ ? ଆପଣ କାହିଁକି ସେ ମୂଲ୍ୟବାନ୍ କପ୍‌ଟିକୁ ସମୁଦ୍ର ଗର୍ଭକୁ ଫିଙ୍ଗିଦେଲେ ?"

ସମ୍ରାଟ ସହାସ୍ୟ ବଦନରେ ପ୍ରଶ୍ନର ଉତ୍ତର ଦେଇ କହିଲେ, ସେଇଟା ମୋର ଅଭ୍ୟାସରେ ପରିଣତ ହୋଇଛି । ମୋର ମୁଖ୍ୟ ଉଦ୍ଦେଶ୍ୟ ହେଲା, ଲୋକେ ଯଦି ଏହା ଜାଣିବେ, ତେବେ ସମୁଦ୍ର ଗର୍ଭକୁ ନିଶ୍ଚୟ ସେମାନେ ଯିବାକୁ ଉତ୍ସାହିତ ହେବେ । ସମୁଦ୍ର ଗର୍ଭରେ କଣ କଣ ସବୁ ରହିଛି, ସେ ଗପ ଶୁଣିବାକୁ ମୋର ଏକାନ୍ତ ଇଚ୍ଛା ।

ବିଜ୍ଞାନ ବଳରେ ମନୁଷ୍ୟ ଆଜି ବଳୀୟାନ ହୋଇ ଅତଳ ସାଗର ସମ୍ବନ୍ଧରେ ବହୁତ କିଛି ଅଭିଜ୍ଞତା ଅର୍ଜନ କରି ପାରିଛି । ମହାଶୂନ୍ୟରେ ଗତି କରି ମନୁଷ୍ୟ ସେଠାରେ ବାସ କରିବା ଉଦ୍ଦେଶ୍ୟରେ ଯେପରି ଆଶା ପୋଷଣ କରିଛି, ଅତଳ ସମୁଦ୍ର ଗର୍ଭରୁ ଧନରତ୍ନ ଲୁଟ୍ କରି ଆଣିବା ପାଇଁ ମଧ୍ୟ ସେହିପରି ଅଭିଯାନ ଚଳାଇଛି ।

ଏ ପର୍ଯ୍ୟନ୍ତ ସମୁଦ୍ରର ତଳର କେଉଁଠି କେତେ ଅଛି ତାହା ପୂର୍ଣ୍ଣମାତ୍ରାରେ ଜଣା ପଡ଼ି ନାହିଁ । ଆମର ଭୌଗୋଳିକ ବିବରଣୀରୁ ପ୍ରମାଣ ଯେ ୭୧ ଭାଗ ଜଳ ଓ ୨୯ ଭାଗ ସ୍ଥଳକୁ ନେଇ ପୃଥିବୀ ଗଠିତ । ତେଣୁ ମୋଟାମୋଟି ଧରି ନିଆଯାଉଛି ଯେ ସ୍ଥଳଭାଗ ଜଳଭାଗର ଏକ ତୃତୀୟାଂଶ । ଏହି ଗଣନା ମଧ୍ୟ ଭ୍ରମଜନକ ହୋଇପାରେ । ଆଜି ମଧ୍ୟ ଅନେକ ବୈଜ୍ଞାନିକମାନଙ୍କର ମତ ଯେ ସମୁଦାୟ ପୃଥିବୀଟାକୁ ଯଦି ସାଗର ମଧ୍ୟରେ ବୁଡ଼ାଇ ଦିଆଯାଏ ତେବେ ଜଳର ପରିମାଣ ଅନ୍ତତଃ ୨୪୦୦ ମିଟର ଅଧିକ ହେବ । ଏଥିରୁ ସହଜରେ ଅନୁମାନ କରାଯାଇପାରେ ଯେ ସମୁଦ୍ରରେ କେତେ ଜଳ ରହିଛି ।

ସେ ଦିନଟି ୧୯୩୦ ମସିହା ଜୁନ ମାସ ୬ ତାରିଖ । ଆଟଲାଣ୍ଟିକ ମହାସାଗରରେ ଥିବା ଦ୍ୱୀପପୁଞ୍ଜଠାରୁ ପ୍ରାୟ ୧୨.୪ କିଲୋମିଟର ଦୂରରେ ଗୋଟିଏ ଜାହାଜ ଆସୁଥିବାର ଲୋକେ ଦେଖିଲେ । କିଛି ସମୟ ପରେ ଜାହାଜଟି ସେଠାରେ ଲଙ୍ଗର ପକାଇଲା । ଲୋକମାନେ ସେଥିପ୍ରତି ନିରୀକ୍ଷଣ କରି ଚାହିଁଥାନ୍ତି । ହଠାତ୍ ଦେଖାଗଲା, ଗୋଟିଏ ଗୋଲାକାର ବସ୍ତୁ ଜାହାଜ ମଧ୍ୟରୁ ବାହାରୁଛି । ଏହି ଗୋଲାକାର ବସ୍ତୁଟିକୁ ଜଳଗୋଳକ କହନ୍ତି । ଏହା ୨୧୫ କି. ଗ୍ରାମ ଓଜନ ବିଶିଷ୍ଟ ଇସ୍ପାତ ଲୁହାରେ ତିଆରି । ଏଥିରେ ଲୋକ ବସିଲେ ଚାରି ଦିଗ ଦେଖିବା ପାଇଁ ଦୁଇଟି କାଚର ଝରକା ଓ ଷ୍ଟିଲ କବାଟଟିଏ ଥିଲା । ବୁଡ଼ାଳୀମାନେ ଗୋଟାଏ ଦ୍ୱାରରେ ସାଗରର ଗଭୀରତମ ଦେଶକୁ ପର୍ଯ୍ୟବେକ୍ଷଣ ଓ ଅନ୍ୟଦ୍ୱାରରେ ଏକ ଉଜ୍ଜ୍ୱଳ ଆଲୋକ ପକାଉଥାନ୍ତି ।



ସର୍ବପ୍ରଥମେ ଦୁଇଟି ଲୋକ ଗୋଲକଟିର ଦ୍ୱାର ଖୋଲି ଭିତରକୁ ପ୍ରବେଶ କଲାପରେ ତାହା ଆସ୍ତେ ଆସ୍ତେ ସମୁଦ୍ର ଭିତରକୁ ଖସାଇ ଦିଆଗଲା । ସେମାନଙ୍କର ନିଶ୍ୱାସ ଓ ପ୍ରଶ୍ୱାସ ଗ୍ରହଣ କରିବା ପାଇଁ ବାୟୁପୂର୍ଣ୍ଣ ନଳୀ ସେଥିରେ ଲାଗି ହୋଇଥିଲା । ତା ଛଡ଼ା ଅତଳଗର୍ଭରୁ ବାର୍ତ୍ତା ବିନିମୟ ପାଇଁ ଟେଲିଫୋନର ବ୍ୟବସ୍ଥା ମଧ୍ୟ ସେଠି ଥିଲା । ସେହି ଗୋଲକ ମଧ୍ୟରେ ଡାକ୍ତର ବିବ ପ୍ରବେଶ କରିଥିଲେ ଓ ତାହା ଧୀରେ ଧୀରେ ସମୁଦ୍ର ତଳକୁ ଗଡ଼ିଗଲା ।

ୱିଲିୟମ୍ ବିବ ଆମେରିକାର ଜଣେ ଡାକ୍ତର । ବହୁଦିନରୁ ତାଙ୍କର ପ୍ରବଳ ଇଚ୍ଛା ଥିଲା ମାଛମାନଙ୍କ ସମ୍ବନ୍ଧରେ ଗବେଷଣା କରିବା । ଡାକ୍ତର ବିବ ଥିଲେ ଜଣେ ଜୀବତତ୍ତ୍ୱବିତ୍ ଓ ପକ୍ଷୀବିଶେଷଜ୍ଞ । ସମୁଦ୍ର ମଧ୍ୟରେ ଥିବା ଜଳଚର ପ୍ରାଣୀମାନଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବା ପାଇଁ ସେ ନାନା ଉପାୟ ଚିନ୍ତା କରୁଥିଲେ । କୌଣସିପ୍ରକାର ଆଲୋକ ସମୁଦ୍ର ଭିତରକୁ ଯାଇ ପାରିବ ନାହିଁ । କିମ୍ବା ସାଧାରଣ ଜୀବମାନେ ଜଳ ତଳେ ବାସକରିବା ସମ୍ଭବ ନୁହେଁ ବୋଲି ଏଥିପୂର୍ବରୁ ଲୋକଙ୍କର ଭିତ୍ତିମୂଳ ଧାରଣା ଥିଲା । ସମୁଦ୍ର ତଳେ ଯେଉଁ ଜୀବସବୁ ବାସ କରନ୍ତି ସେ ଅତି ଅଦ୍ଭୁତ ପ୍ରକାର ।

ଏ ପ୍ରକାର ସମସ୍ତ ବିଶ୍ୱାସର ସତ୍ୟାନୁସନ୍ଧାନ ଉଦ୍ଦେଶ୍ୟ ନେଇ ଡାକ୍ତର ବିବଙ୍କର ମନ ଉଦ୍‌ବେଳିତ ହେଲା । ବିବ ସାଗର ଗର୍ଭକୁ ଯିବାପାଇଁ ମିସ୍ ହଲିଷ୍ଟର ବୋଲି ଜଣେ ମହିଳାଙ୍କ ସାହାଯ୍ୟ ନେଇଥିଲେ । ବାର୍ଟନ ନାମକ ଜଣେ ସାହେବ ମଧ୍ୟ ତାଙ୍କ ସଙ୍ଗରେ ଥିଲେ ।

ଏଥର ଗୋଲକଟି ଚାଲିଲା ଅତଳ ସାଗର ଗର୍ଭର ଅଭିମୁଖରେ । ଜାହାଜ ଉପରେ ମିସ୍ ହଲିଷ୍ଟର୍ ଟେଲିଫୋନ୍ ଧରିଥାନ୍ତି । ସେ ପଚାରିଲେ, "୩୦ ମିଟର ପର୍ଯ୍ୟନ୍ତ ଗୋଲକଟିକୁ ଖସାଇ ଦିଆଗଲାଣି । 'ଆପଣ ସେଠାରେ କଣ ଦେଖୁଛନ୍ତି ।" ଫୋନ୍‌ରେ ଉତ୍ତର ମିଳିଲା, "ପ୍ରଥମେ ଯେଉଁ ସୁନ୍ଦର ଆଭା ଆମର ଦୃଷ୍ଟିଗୋଚର ହେଉଥିଲା, ତାହା

କ୍ରମେ ସାମାନ୍ୟ ମଳିନ ପଡ଼ି ଆସୁଥିବାର ଅନୁମାନ କରାଯାଉଛି । ବିଶେଷ କିଛି ପରିବର୍ତ୍ତନ ହେଲାପରି ମନେ ହୁଏ ନାହିଁ ।"

ଏହାପରେ ଗୋଲକଟି କ୍ରମେ ୩୦ ମିଟରରୁ ୧୮୦ ମିଟର ପର୍ଯ୍ୟନ୍ତ ତଳକୁ ଯିବାପରେ ମିସ୍ ହଲିଷ୍ଟର ପୁଣି ଫୋନ୍‌ରେ କହିଲେ, 'ବର୍ତ୍ତମାନ ସୁଦ୍ଧା ଗୋଲକଟି ୧୮୦ ମିଟର ଗଲାଣି ।' ଏଥିପୂର୍ବରୁ କେହି ସମୁଦ୍ରର ଏତେ ଅତଳ ଗର୍ଭକୁ ଯାଇ ନ ଥିଲେ । ବୁଡ଼ାଳୀମାନେ ସେତେବେଳେ କାଚ ଝରକାରୁ ଆଶ୍ଚର୍ଯ୍ୟ ଧରଣର ବିଭିନ୍ନପ୍ରକାର ଜୀବ ଦେଖିବାକୁ ପାଇଲେ । ଏ ପ୍ରକାର ଅଦ୍ଭୁତ ଜୀବ ଦେଖି ସେମାନଙ୍କର ମନରେ ଯେଉଁ ଆନନ୍ଦ ତାହା କେତେଖେ କିଏ ? ୧୮୦ ମିଟର ଅତିକ୍ରମ କରି ଏଥର ଗୋଲକଟି ୨୪୦ ମିଟର ସ୍ତରରେ ଯାଇ ପହଞ୍ଚିଲା । ତଳର ଗାଢ଼ କୃଷ୍ଣବର୍ଣ୍ଣ ରଙ୍ଗ ଦେଖି ଆଉ ତଳକୁ ଖସିବା ବିବଙ୍କର ସାହସ ହେଲାନାହିଁ । ସେ ଫୋନ୍‌ରେ କହିଲେ, "ଆଉ ତଳକୁ ଖସାନ୍ତୁ ନାହିଁ । ବରଂ ଉପରକୁ ଉଠାଇ ନିଅନ୍ତୁ ।"

ସେତେବେଳେ ଘଣ୍ଟାରେ ଠିକ୍ ଦୁଇଟା ସମୟ । ମିସ୍ ହଲିଷ୍ଟର ଖବର ପାଇ ଆଉ ବିଳମ୍ବ ନ କରି ଗୋଲକଟିକୁ ଆସ୍ତେ ଆସ୍ତେ ଉପରକୁ ଉଠାଇ ଆଣିଲେ ଏବଂ ମିସ୍ ହଲିଷ୍ଟର ଦୁଇ ବନ୍ଧୁଙ୍କୁ ଆଲିଙ୍ଗନ କରି ଧନ୍ୟବାଦ ଦେଲେ ।

କୌଣସି କାର୍ଯ୍ୟରେ ଆଂଶିକ କୃତକାର୍ଯ୍ୟ ହେଲେ ଅନେକ ସମୟରେ ମନୁଷ୍ୟ ମନରେ ଅଧିକ ପ୍ରେରଣା ଆସି ଥାଏ । ଉଚ୍ଚ ଆକାଙ୍କ୍ଷା ମନରେ ପୋଷଣ କରି ଡାକ୍ତର ବିବ ପୁଣି ଏକପ୍ରକାର ନୂତନ ଧରଣର ଜଳଗୋଲକ ତିଆରି କଲେ ।

୧୯୩୪ ମସିହା ଅଗଷ୍ଟ ୧୧ ତାରିଖ । ସାଗର ଗର୍ଭକୁ ଦ୍ୱିତୀୟ ଥର ପାଇଁ ତାଙ୍କର ଯାତ୍ରା ଆରମ୍ଭ ହେଲା । ଜଳଗୋଲକଟି ଏଥର ୭୫୦ ମିଟର ତଳେ ଯାଇ ପହଞ୍ଚିଲା । ସେ ଉଦ୍‌ଗ୍ରୀବ ନ ହୋଇ ପୁଣି ଅଧିକ ତଳକୁ ଗଲେ । ସବୁ ସମୟ ପାଇଁ ମିସ୍ ହଲିଷ୍ଟରଙ୍କ ସହିତ

ବିବିଙ୍କର ଫୋନ୍‌ରେ ପୂର୍ବଭଳି କଥାବାର୍ତ୍ତା ଚାଲିଥାଏ । ସମୁଦ୍ର ବୁଡ଼ାଳୀମାନେ ସାଧାରଣତଃ ୯୦ ମିଟର ପର୍ଯ୍ୟନ୍ତ ବୁଡ଼ି ପାରୁଥିଲେ । ମନୁଷ୍ୟର ଅକ୍ଲାନ୍ତ ସାଧନା କେବେହେଲେ ନିଷ୍ଫଳ ହୋଇଯାଏ ନାହିଁ ବୋଲି ଯୁଗେ ଯୁଗେ ପ୍ରମାଣିତ ହୋଇଛି । ବିବି ଯେତେବେଳେ ଦେଖିଲେ ସମୁଦ୍ର ବୁଡ଼ାଳୀମାନଙ୍କ ଅପେକ୍ଷା ସେ ଅଧିକ ନଅଗୁଣ ପର୍ଯ୍ୟନ୍ତ ସମୁଦ୍ର ଗଭୀରକୁ ଯାଇ ପାରିଛନ୍ତି ସେତେବେଳେ ତାଙ୍କର ଆନନ୍ଦର ସୀମା ନ ଥାଏ । ଏହି କୃତକାର୍ଯ୍ୟ ପାଇଁ ପଛେ ସେ ସବୁରି ପ୍ରଶଂସାର ପାତ୍ର ହୋଇଥିଲେ । ଅତଳ ସମୁଦ୍ର ଗର୍ଭରେ ବିଚରଣ କରି ତାଙ୍କର ଯେଉଁ ଅନୁଭୂତି ହୋଇଥିଲା, ସେ ସବୁର ତଥ୍ୟ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରି ଖଣ୍ଡିଏ ପୁସ୍ତକ ପ୍ରଣୟନ କରି ଯାଇଛନ୍ତି । ସେ ପୁସ୍ତକଟି ଆଜିକାଲିର ବୁଡ଼ାଳୀମାନଙ୍କ ପକ୍ଷେ ଅତି ଉପାଦେୟ ହୋଇଛି ।

ସାଗର ଗର୍ଭରେ ଜଳଜୀବମାନଙ୍କର ଯେଉଁ ବିରାଟ ମିଉଜିୟମ୍ ସବୁ ରହିଛି ତା ସମ୍ବନ୍ଧରେ କିଞ୍ଚିତ ଜ୍ଞାନ ଅର୍ଜ୍ଜନ କରିବା ପାଇଁ ଡାକ୍ତର ବିବିଙ୍କ ସହିତ ବହୁ ବୀରପୁରୁଷମାନଙ୍କର ଉଦ୍ୟମ ଅତୀବ ପ୍ରଶଂସନୀୟ । ମାତ୍ର ଆଧୁନିକ ଯୁଗରେ ସେହି ବୁଡ଼ାଳୀମାନଙ୍କ ପୂର୍ବ ପ୍ରଣାଳୀ ଅନୁଯାୟୀ କେହି କାର୍ଯ୍ୟ କରୁ ନାହାନ୍ତି । ସାଗରେ ଗର୍ଭକୁ ଅବତରଣ କରିବା ଏ ଯୁଗରେ ତାହା ଏକପ୍ରକାର କ୍ରୀଡ଼ାରେ ପରିଣତ ହେଲାଣି । ଆଜିକାଲି ଯେଉଁ ଯନ୍ତ୍ର ବୁଡ଼ାଳୀମାନଙ୍କ ପାଇଁ ଉଦ୍ଭାବନ କରାଗଲାଣି, ଇଂରାଜୀରେ ତାକୁ Aqua lung ବୋଲି କହନ୍ତି । Aquaର ଆକ୍ଷରିକ ଅର୍ଥ ହେଉଛି ଜଳ, ଏବଂ lungର ଅର୍ଥ ଫୁସ୍‌ଫୁସ୍ । ଏହି ଯନ୍ତ୍ରଟି ଫୁସ୍‌ଫୁସ୍‌କୁ ବହୁ ପରିମାଣରେ ଅମ୍ଳଯାନ ଯୋଗାଇଦିଏ । ଅମ୍ଳଯାନ ବିନା ମନୁଷ୍ୟ ବଞ୍ଚିରହିବା ଅସମ୍ଭବ । ସୁତରାଂ ବୈଜ୍ଞାନିକ ପ୍ରଣାଳୀରେ ଏ ଅଭାବ ସବୁ ଦୂର କରିବା ପାଇଁ ଏ ପ୍ରକାର ଯନ୍ତ୍ର ଉଦ୍ଭାବନ କରାଯାଇଛି ।

ଜଳ ଫୁସ୍‌ଫୁସ୍ ଗୋଟାଏ କିଭଳି ଜିନିଷ ଏବଂ ଏହା କିପରି ବୁଡ଼ାଳୀମାନଙ୍କୁ ସାହାଯ୍ୟ କରେ ଏ ବିଷୟ ଜାଣିବାପାଇଁ ତୁମମାନଙ୍କ ମନରେ ଆଗ୍ରହ ସୃଷ୍ଟି ହୋଇପାରେ । ଜଳ ଫୁସ୍‌ଫୁସ୍‌ଟି ଗ୍ରେଟ ଟାଙ୍କିଟିଏ । ଏଥିରେ ଥିବା ବାୟୁ ସ୍ୱାଭାବିକ ଚାପରେ ସଙ୍କୁଚିତ ହୁଏ । ଟାଙ୍କି ମଧ୍ୟରୁ

ଏକ ରବର ନଳୀ ଯାଇ ବୁଡ଼ାଳୀର ପାଟି ସହିତ ସଂଯୋଗ ହୋଇଥାଏ । ବୁଡ଼ାଳୀ ଯେତେବେଳେ ଗଭୀର ସମୁଦ୍ର ତଳକୁ ଯାଏ, ଜଳର ଚାପ ହେବା ଫଳରେ ସଙ୍କୁଚିତ ବାୟୁ ସ୍ୱୟଂ ଚାଳନା ହୁଏ, ଏବଂ ସେହି ବାୟୁ, ବୁଡ଼ାଳୀର ପାଟି ମଧ୍ୟକୁ ଆସ୍ତେ ଆସ୍ତେ ପ୍ରବେଶ କରେ । ଏତଦ୍ ବ୍ୟତୀତ ଉଙ୍ଗନ ଚଷମା ଟିଏ ଓ ଗୋଡ଼ରେ ଏକ ରବର ଆଙ୍ଗୁଳ ମଧ୍ୟ ସେ ବ୍ୟବହାର କରିଥାଏ ।



ସାଧାରଣତଃ ଜଣେ ବୁଡ଼ାଳୀ ନିଜର ନିଜ ଫୁସ୍‌ଫୁସ୍ ସାହାଯ୍ୟରେ ୬୩ ମିଟର ପର୍ଯ୍ୟନ୍ତ ସାଗର ଗର୍ଭକୁ ଯାତ୍ରା କରିବା ସମ୍ଭବପର । ତା'ଠାରୁ ଅଧିକ ଗଭୀରକୁ ପ୍ରବେଶ କଲେ ଜଳର ଚାପ ସହ୍ୟ କରି ହୁଏ ନାହିଁ । ବାୟୁର ଚାପ ଓ ଅଧିକମାତ୍ରାରେ ହୁଏ ତେବେ ଫୁସ୍‌ଫୁସ୍‌ରୁ ଦୂଷିତ ଅଙ୍ଗାରକାମ୍ଳ ନିର୍ଗତ ହୋଇ ନ ପାରିବା ଅନ୍ୟ ଏକ କାରଣ । କୌଣସି ଏକ ବୁଡ଼ାଳୀ ଥରେ ୧୧୯୧ ମିଟର ସମୁଦ୍ର ତଳକୁ ଯାଇ ମୃତ୍ୟୁ ମୁଖରେ ପଡ଼ିଥିଲେ ।

ଆହୁରି ଏକ ଚିନ୍ତା ଆମ୍ଭମାନଙ୍କ ମନରେ ଉଦ୍ରେକ ହେବା ସ୍ୱାଭାବିକ । ମନୁଷ୍ୟ ଜୀବିତ ଅବସ୍ଥାରେ ଜଳ ମଧ୍ୟରେ ଗ୍ରସିବାର ତ କଥା । ମାତ୍ର ସେ କେଉଁ କାରଣରୁ ଜଳମଧ୍ୟରେ ବୁଡ଼ି ରହିପାରେ ଯଦି ପ୍ରଶ୍ନ ହୁଏ, ଏ ବିଷୟ ବୁଝି ପାରିବାରେ କୌଣସି ଅସୁବିଧା ନାହିଁ । ତଳକୁ ଟାଣିହୋଇ ରହିବା ପାଇଁ ବୁଡ଼ାଳୀମାନଙ୍କର ଅଣ୍ଟାରେ ବେଲ୍ଟ ଥାଏ ଓ ତା ସହିତ ମଧ୍ୟ କେତେ କିଲୋଗ୍ରାମ ସୀସା ବନ୍ଧା ହୋଇଥାଏ । ଏଣୁ ବୁଡ଼ାଳୀ ଉପରକୁ ଉଠିବା ସମ୍ଭବ ହୁଏ ନାହିଁ । କେବଳ ଅଭିଜ୍ଞ ବୁଡ଼ାଳୀମାନଙ୍କ ପକ୍ଷେ ଜଳ ଫୁସ୍‌ଫୁସ୍ ଯନ୍ତ୍ରଟି ବ୍ୟବହାର କରାଯିବା ନିତାନ୍ତ ଉଚିତ ।

ସମୁଦ୍ରର ଗଭୀରତା କେତେ ତାହା ଜାଣିବାପାଇଁ ୧୯୨୦ ମସିହାରେ ପଣ୍ଡିତମାନେ ଗୋଟିଏ ସୂତ୍ର ନିର୍ଣ୍ଣୟ କଲେ । ସେହି ସୂତ୍ରରୁ ଜଣାଯାଏ ଯେ ଶବ୍ଦର ତରଙ୍ଗ ଜଳର ନିମ୍ନ ଦେଶକୁ ଯାଇ ଫେରିବା ଯେତିକି ସମୟ ଲାଗେ ତଦ୍ଦ୍ୱାରା ଜଳର ଗଭୀରତା ନିର୍ଣ୍ଣୟ କରାଯାଏ ।

ପଶ୍ଚିମ ପ୍ରଶାନ୍ତ ମହାସାଗରରେ ଅବସ୍ଥିତ ଫିଲିପାଇନ୍ ଦ୍ୱୀପ ନିକଟରେ ସମୁଦ୍ରର ଗଭୀର ୧୦୭୨୦ ମିଟରରୁ ଊର୍ଦ୍ଧ୍ୱ ବୋଲି ସ୍ଥିର କରାଯାଇଛି । ପୃଥିବୀ ମଧ୍ୟରେ ହିମାଳୟ ପର୍ବତର ଏଭରେଷ୍ଟ ଶୃଙ୍ଗ ୮୭୪୨.୩ ମିଟର । ତାହାକୁ ଯଦି ଆମେ ଏହି ମହାସାଗରର ଗଭୀରତମ ଗର୍ତ୍ତରେ ବୁଡ଼ାଇ ନେଉ ତେବେ ଶୃଙ୍ଗଟି ବୁଡ଼ି ତା ଉପରକୁ ଆହୁରି ୧୫୦୦ ମିଟର ଅଧିକ ରହିବାର କଳନା କରାଯାଇଛି । ଧନ୍ୟ ଈଶ୍ୱରଙ୍କର ଏ ବିଚିତ୍ର ସୃଷ୍ଟି । ଧନ୍ୟ ଏ ଜଗତ ।

ସୁଇଜରଲଣ୍ଡର ଅଧ୍ୟାପକ ଅଗଷ୍ଟ ପିକାର୍ଡ ଏହିପରି ସମୁଦ୍ରବୁଡ଼ା ଯନ୍ତ୍ରର ସାହାଯ୍ୟ ନେଇ ଭୂମଧ୍ୟସାଗରର ତିନିହଜାର ଏକଶତ ପଚାଶ ମିଟର ବା ୧୦, ୩୩୫ ଫୁଟ ଗଭୀରତମ ସମୁଦ୍ର ମଧ୍ୟକୁ ଯାଇ ବହୁ ତଥ୍ୟ ସଂଗ୍ରହ କରିଥିଲେ । ଏପରିକି ସେତେବେଳେ ତାଙ୍କର ବୟସ ୭୯ ବର୍ଷ ସେ ସମୁଦ୍ରର ଅତଳ ଗଭୀରକୁ ଯାଇ ଦୁଇଘଣ୍ଟା

ପନର ମିନିଟ କାଳ ରହିଥିଲେ । ଧନ୍ୟ ତାଙ୍କର ଅସୀମ ସାହସ, ଧନ୍ୟ ତାଙ୍କର ଜୀବନ ।

ଆଜକାଲ ବହୁ ସାହସୀ ଲୋକମାନେ ଗଭୀର ସମୁଦ୍ର ମଧ୍ୟକୁ ଗଲେଣି । ମାତ୍ର ଡାକ୍ତର ଜଇଲପୁମ ତଙ୍କର ଅପରସୀମ ସାହସ ଯେ ସମସ୍ତ ବୁଡ଼ାଳୀଙ୍କର ପ୍ରଥମ ପଥପ୍ରଦର୍ଶକ ଏହା ମୁକ୍ତ କଣ୍ଠରେ ସମସ୍ତେ ସ୍ୱୀକାର କରିବେ ।

———



# ଚିରିଙ୍କିଲ ହିଲ୍ଲା ଦେଶର ଶାସକ ହେଲା

କେତେକ ଲୋକଙ୍କର ଧାରଣା, ଯେଉଁମାନେ ପର୍ବତ, ପାହାଡ଼ ବଣ ଜଙ୍ଗଲରେ ବସବାସ କରି ରହିଥାଆନ୍ତି, ସେମାନଙ୍କର ଶିକ୍ଷା, ସଂସ୍କୃତି ଆଦି ଅନ୍ୟମାନଙ୍କ ତୁଳନାରେ ବହୁ ପଛରେ । ମାତ୍ର ଏଭଳି ଭ୍ରମମୂଳକ ଧାରଣା ମନରେ ଆଣିବା ଅନୁଚିତ । ଉପଯୁକ୍ତ ପରିବେଷ୍ଟନୀ ନ ପାଇଲେ ମଧ୍ୟ ମନୁଷ୍ୟ ତାର ଉଚ୍ଚ ଆକାଂକ୍ଷା ଓ ସଦ୍‌ଗୁଣ ବଳରେ ଗୁଣସମ୍ପନ୍ନ ବ୍ୟକ୍ତି ହିସାବରେ ସମସ୍ତଙ୍କ ନିକଟରେ ପରିଚିତ ହୋଇଥାଏ ।

ପୃଥିବୀରେ ଯେତେବେଳେ ପାପର ମାତ୍ରା ଅଧିକ ଭାରାକ୍ରାନ୍ତ ହୁଏ, ସେତେବେଳେ ଜଣେ ଜଣେ କ୍ଷଣଜନ୍ମା ପୁରୁଷ ଏ ମର୍ତ୍ତ୍ୟଧାମରେ ଅବତୀର୍ଣ୍ଣ ହୁଅନ୍ତି । ଜଣାପଡ଼େ ସତେ ଯେପରି ସେହି ମହାପୁରୁଷ-

ମାନେ କୌଣସି ପ୍ରକାର ବାଧା ନିର୍ଦ୍ଦେଶ ନେଇ ଏଠାକୁ ଆସିଛନ୍ତି । ସେମାନେ ଯାହା ଉଚିତ ବୋଲି ମନେ କରନ୍ତି ତାହା କାର୍ଯ୍ୟରେ ପରିଣତ କରନ୍ତି । ଏହି ମହାମାନ ମହାପୁରୁଷ ସମାଜର ବିରୋଧ ସତ୍ତ୍ୱେ ପୃଥିବୀରେ ଜନ୍ମଗ୍ରହଣ କଲାପରେ ସମାଜ ଭିତରେ ଯେଉଁ କୁସଂସ୍କାର ସବୁ ପୂର୍ବ ଚଳିଥାଏ ତାହାକୁ ସମୂଳେ ଲୋପକରି ସତ୍ୟ ପ୍ରତିଷ୍ଠା କରନ୍ତି । ଫଳରେ ସମାଜରେ କୁସଂସ୍କାର ପରିବର୍ତ୍ତେ ସତ୍ୟ, ଶାନ୍ତି, ଦୟା ଓ କ୍ଷମାର ମୂଳଦୁଆ ପଡ଼େ ।

ଯୁଗେ ଯୁଗେ ମହାପୁରୁଷମାନଙ୍କର ଜୀବନୀ ନାନା ଅଲୌକିକ ଘଟଣାବଳୀରେ ପରିପୂର୍ଣ୍ଣ । ଜୈନ ବୁଦ୍ଧଙ୍କଠାରୁ ଆରମ୍ଭ କରି ଏ ଯୁଗର ଗାନ୍ଧି ଗୋପବନ୍ଧୁ ପର୍ଯ୍ୟନ୍ତ ଯେତେ ମହାପୁରୁଷ ଜନ୍ମଲାଭ କରିଗଲେଣି ପ୍ରତ୍ୟେକଙ୍କର ଦାନ ସମାଜ ପକ୍ଷେ ଅତୁଳନୀୟ । ସମସ୍ତେ ଏ ଜଗତକୁ ଭଣା ଅଧିକେ ଜ୍ଞାନାଲୋକ ଦେଇ ଯାଇଛନ୍ତି । ସମାଜ ବିରୋଧରେ ଲଢ଼ି ସମାଜରେ ସେ ଯେଉଁ ସାମ୍ୟ ମୈତ୍ରୀ ଭାବ ଲୋକଙ୍କ ମନରେ ଆଣି ଦେଇଛନ୍ତି, ସେଥିପାଇଁ ସେମାନେ ଯୁଗ ଯୁଗ ଧରି ଅମର ହୋଇ ରହିଛନ୍ତି ଓ ରହିବେ । ଏ ଯୁଗର ମହାତ୍ମା ଗାନ୍ଧିଙ୍କ ଭଳି ଜଣେ ଯୋଗଜନ୍ମା ମହାପୁରୁଷ ଜନ୍ମଲାଭ କରି ଅନ୍ୟାୟ ବିରୁଦ୍ଧରେ ଲଢ଼ି କିପରି ନିଜକୁ ଆତ୍ମବଳି ଦେଇଛନ୍ତି ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଇଛନ୍ତି ଆବ୍ରାହମ ଲିଙ୍କନ୍ ।

ଆଜିକାଲିର ତ କଥା ନୁହେଁ । ଏହା ପ୍ରାୟ ଦେଢ଼ଶହ ବର୍ଷ ତଳର ଘଟଣା । ସେତେବେଳର ଜଙ୍ଗଲି ପିଲାର ନେତୃତ୍ୱ ଯେ ଦେଶ ତଥା ଜାତି ଉପରେ କିପରି ପ୍ରଭାବ ପକାଇଛି, ଏଠାରେ ଆମେ ଆଜି ତାହା ଆଲୋଚନା କରୁଥାଉଁ ।

ଏହି ମହାପୁରୁଷ ଆବ୍ରାହମ୍ ଲିଙ୍କନଙ୍କର ଜନ୍ମ ୧୮୦୯ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୨ ତାରିଖ ଦିନ ଆମେରିକାର ନିବିଡ଼ ଜଙ୍ଗଲରେ । ତାଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହେତୁ ସ୍କୁଲ କଲେଜରେ ପାଠ ପଢ଼ିବାରୁ ସେ ବଞ୍ଚିତ ହୋଇଥିଲେ । ତାଙ୍କର ମାତା ଅଳ୍ପଶିକ୍ଷିତା

ଥିବା ଯୋଗୁ ପ୍ରାଥମିକ ଶିକ୍ଷା ତାଙ୍କର ହାରା ସମାପ୍ତ ହୋଇଥିଲା । କିନ୍ତୁ ତାଙ୍କର ଅଧିକ ବିଦ୍ୟା ଶିକ୍ଷାପାଇଁ ପ୍ରବଳ ଚେଷ୍ଟା ହେବା ଫଳରେ ସେ ଓକିଲାତି ପର୍ଯ୍ୟନ୍ତ ପଢ଼ି ପାରିଥିଲେ । ଅଧ୍ୟୟନ ପ୍ରତି ତାଙ୍କର ଏତେ ଉତ୍ସାହ ଥିଲା ଯେ ସେ ମାଗିଯାଚି, ମୂଲଲଗି ପାଠ ପଢ଼ିଥିଲେ । ସେ ଯେପରି ମେଧାବୀ ସେହିପରି ବଳବାନ ମଧ୍ୟ ଥିଲେ । ପ୍ରବାଦ ଅଛି, ଥରେ ସେ ଜଣେକ ବନ୍ଧୁଙ୍କଠାରୁ "ଜର୍ଜ ଓ୍ୱାସିଂଟନଙ୍କର ଜୀବନୀ" ପୁସ୍ତକ ଖଣ୍ଡିଏ ମାଗି ଆଣିଥିଲେ ପଢ଼ିବାକୁ । ଦୈବାତ ରାତିରେ ତାଙ୍କର ଶୋଇବା ଅବସ୍ଥାରେ କୁଡ଼ିଆରେ ବର୍ଷାହୋଇ ବହି ଖଣ୍ଡିକ ଭିଜିଯାଇ ଅତି କଦର୍ଯ୍ୟ ହୋଇଗଲା । ତା'ପରେ ସେ ପୁସ୍ତକ ମାଲିକଙ୍କର ଆଦେଶ ମତେ ତାଙ୍କର ମୂଲଲଗି ଶେଷରେ ପୁସ୍ତକଟିର ଅଧିକାରୀ ହୋଇଥିଲେ । ଓକିଲାତି ପାସ୍ କଲେ କଣ ହେବ, ସେ ଅନ୍ୟାୟକୁ ପ୍ରଶ୍ରୟ ଦେଉ ନ ଥିଲେ ଏବଂ ତାର ଅପର ପକ୍ଷରେ ରହି ମୋକଦମା ଲଢ଼ୁଥିଲେ ।

ଏ ତ ଗଲା ତାଙ୍କ ଜୀବନର ଗୋଟିଏ ସାଧାରଣ ଘଟଣା । ଏହାଠାରୁ ବଳି ତାଙ୍କ ଜୀବନରେ ବହୁ ବିଶିଷ୍ଟ ଘଟଣା ଘଟି ଥିବାର ସବୁ ରହିଛି ।

କିନ୍ତୁ ଆମକୁ ମନେ ରଖିବାକୁ ହେବ ଯେ, ଏତେ ଖୁବ କମ୍ ବୟସରେ ଅନ୍ୟାୟକୁ ଦମନ କରିବାପାଇଁ ବିଦେଶୀ ଶାସକଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ଆମେରିକା ଇତିହାସ ବ୍ୟତୀତ ଅନ୍ୟ କେଉଁଠି ଦେଖିବାକୁ ମିଳେ ନାହିଁ ।

ଅବ୍ରାହମ୍ ଲିଙ୍କନ୍‌ଙ୍କୁ ଯେତେବେଳେ ୧୦ ବର୍ଷ ବୟସ, ତାଙ୍କର ମା' ମରି ଯାଇଥିଲେ । ତେଣୁ ସେ ତାଙ୍କର ଦୟାମୟୀ ବିମାତାଙ୍କ ଦ୍ୱାରା ଲାଳିତ-ପାଳିତ ହୋଇଥିଲେ । ୧୯ ବର୍ଷ ବୟସ ବେଳକୁ ଆବ୍ରାହମ୍ ଲିଙ୍କନ୍ ଜଣେ ବେପାରୀଙ୍କ ସହିତ ଦକ୍ଷିଣ ଆମେରିକାକୁ ଜଳପଥରେ ବ୍ୟବସାୟ କରିବା ଉଦ୍ଦେଶ୍ୟରେ ଯାଇଥିଲେ ।

ସେତେବେଳେ ଦକ୍ଷିଣ ଆମେରିକାର ସାହେବମାନେ ଆଫ୍ରିକାର ନିଗ୍ରୋମାନଙ୍କୁ ବହୁସଂଖ୍ୟାରେ କ୍ରୀତଦାସ କରି ରଖିଥିଲେ । ପଶୁଙ୍କ ଭଳି ସେମାନଙ୍କ ସହିତ ବ୍ୟବହାର କରୁଥିଲେ । ସେମାନଙ୍କୁ ଅକଥନୀୟ ଦଣ୍ଡ ଦେଉଥିଲେ । ସେମାନେ ଅତିଶୟ ଦୁଃଖ ନିର୍ଯ୍ୟାତନା ଭୋଗକରି ସେଠାରେ ପଡ଼ି ରହୁଥିଲେ । ସମସ୍ତ ପଡ଼ିଲେ ଏହି କ୍ରୀତଦାସମାନେ ବଜାରରେ ଗୋରୁଗାଈଙ୍କ ପରି ଖରିଦ ବିକ୍ରୀ ମଧ୍ୟ ହେଉଥିଲେ । ସେଠାକାର ଗୋରାମାନଙ୍କର ଏହିପରି ବର୍ବର ଓ ନୃଶଂସ କାର୍ଯ୍ୟ ଦେଖି ଆବ୍ରାହମ୍ ଲିଙ୍କନ ବଡ଼ ଦୁଃଖିତ ହେଲେ । ଗୋରାମାନଙ୍କୁ ଜବତ୍ କରି ତାଙ୍କ ହସ୍ତରୁ ନିଗ୍ରୋମାନଙ୍କୁ କିପରି ମୁକ୍ତ କରିବେ, ସେଥିପାଇଁ ସେ ପ୍ରତିଜ୍ଞାବଦ୍ଧ ହେଲେ ।

୧୯ ବର୍ଷର ପିଲା ପକ୍ଷରେ ଅନ୍ୟାୟ, ଅବିଚାର ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ପ୍ରତିଜ୍ଞାବଦ୍ଧ ହେବା କମ୍ ଗୌରବର କଥା ନୁହେଁ । କେବଳ କଥାରେ ନୁହେଁ, କାର୍ଯ୍ୟରେ ମଧ୍ୟ ଶେଷରେ ସେ ପରିଣତ କରିଥିଲେ ।

ଆବ୍ରାହମ୍ ଜଣେ ବିଚକ୍ଷଣ ଆଇନଜୀବୀ ଥିଲେ । କେବଳ ସେତିକି ନୁହେଁ ସେ ମଧ୍ୟ ଜଣେ ସୁବକ୍ତା ହିସାବରେ ସାରା ଦେଶରେ ସୁପରିଚିତ । ଆବ୍ରାହମ୍ ଲିଙ୍କନ ଯେ ଦିନେ ଦେଶରେ ଜଣେ ବିଖ୍ୟାତ ଲୋକ ହୋଇ ପାରିବେ ଏକଥା ପିଲାଦିନରୁ ବେଶ ଜଣାପଡ଼ୁଥିଲା । ସୁବାସିତ ପୁଷ୍ପ ତାର ବାସକୁ ବିତରଣ କରି ବାୟୁମଣ୍ଡଳକୁ ଯେପରି ସୁଗନ୍ଧିତ କରିରଖେ, ସେହିପରି ଆବ୍ରାହମ୍ ଲିଙ୍କନ୍‌ଙ୍କର ସଦ୍‌ଗୁଣ-ଗୁଡ଼ିକ ସାରା ଦେଶରେ ପ୍ରସାରିତ ହୋଇଥିଲା । ଏହି କାରଣ ଯୋଗୁଁ ସେ ୧୮୬୦ ମସିହା ବେଳକୁ ଆମେରିକାର ରାଷ୍ଟ୍ରପତି ରୂପେ ନିର୍ବାଚିତ ହୋଇଥିଲେ ।

ମନୁଷ୍ୟର ଇଚ୍ଛା ଓ ଉଦ୍ୟମ ବଳବତୀ ଥିଲେ ମନର ଅଭିଳାଷ ଅନେକାଂଶରେ ପୂରଣ ହେବାର ବହୁ ଦୃଷ୍ଟାନ୍ତ ରହିଛି । ଆବ୍ରାହମ ଲିଙ୍କନଙ୍କର ପ୍ରବଳ ଉଦ୍ୟମ ଓ ଉତ୍ସାହ ଯୋଗୁଁ ତାଙ୍କର ମନର

ବାସନା ଶେଷରେ ବାସ୍ତବତାରେ ପରିଣତ ହୋଇ ପାରିଥିଲା । ଏତେବଡ଼ ପଦମର୍ଯ୍ୟାଦାର ଅଧିକାରୀ ହୋଇ ସୁଦ୍ଧା ତାଙ୍କ ମନରେ ଟିକିଏ ହେଲେ ଗର୍ବ ଓ ଅହଙ୍କାର ନଥିଲା । ସେ ପ୍ରଥମେ ଦାସତ୍ୱ ପ୍ରଥାକୁ ଦେଶରୁ ସମୂଳେ ଲୋପ କରିବା ପାଇଁ ଅଣ୍ଟା ଭିଡ଼ିଲେ । ଆମେରିକାର ରାଷ୍ଟ୍ରପତି ନିର୍ବାଚିତ ହେବା ଯୋଗୁଁ ଦକ୍ଷିଣ ଆମେରିକା ରାଷ୍ଟ୍ର-ସମୂହ ତାଙ୍କ ବିରୋଧରେ ବିଦ୍ରୋହ ସୃଷ୍ଟି କଲେ । କାରଣ ଦକ୍ଷିଣ ରାଷ୍ଟ୍ରମାନଙ୍କରେ ଅଧିକ କ୍ରୀତଦାସ ଥିଲେ । ବିଦ୍ରୋହୀମାନେ ନିଜ ନିଜ ରାଷ୍ଟ୍ରର ସ୍ୱାଧୀନ ଘୋଷଣା କରି କେନ୍ଦ୍ର ଆମେରିକା ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଯୁଦ୍ଧ ଘୋଷଣା ସତ୍ତ୍ୱେ ଆବ୍ରାହମ ଲିଙ୍କନ ଟିକିଏ ବିଚଳିତ ହେଲେ ନାହିଁ । ବିଦ୍ରୋହକୁ ଦମନ କରିବା ପାଇଁ ସେ ଆପ୍ରାଣ ଉଦ୍ୟମ ଚଳାଇଥିଲେ । ଶେଷରେ ତାଙ୍କ ନିକଟରେ ସମସ୍ତେ ପରାସ୍ତ ହେଲେ ଏବଂ କ୍ରୀତଦାସମାନଙ୍କୁ ଦାସତ୍ୱ ବନ୍ଧନରୁ ମୁକ୍ତ କରିବା ପାଇଁ ଘୋଷଣା କଲେ । ଏହି ୧୮୬୨ ସେପ୍ଟେମ୍ବର ୨୨ ତାରିଖର ଘଟଣା । ଏପରି ବୀରତ୍ୱର କାର୍ଯ୍ୟ କରିଥିବା ହେତୁ ଆବ୍ରାହମ ଲିଙ୍କନ ପୁନର୍ବାର ୧୮[illegible]୫ ଖ୍ରୀଷ୍ଟାବ୍ଦରେ ରାଷ୍ଟ୍ରପତି ରୂପେ ନିର୍ବାଚିତ ହେଲେ । ସେହିବର୍ଷ ଅପ୍ରେଲ ୯ ତାରିଖରେ ଦକ୍ଷିଣ ରାଷ୍ଟ୍ରସମୂହ ନିଜ ନିଜର ଆତ୍ମସମର୍ପଣ କଲେ । ଏହି ବିଜୟ ଉତ୍ସବ ସମଗ୍ର ଯୁକ୍ତରାଷ୍ଟ୍ରରେ ମହା ସମାରୋହରେ ପାଳନ କରାଗଲା ।

ପରିତାପର ବିଷୟ, ବିଜୟ ଉତ୍ସବର ସୁଖକୁ ଉପଭୋଗ କରିବାପାଇଁ ଆବ୍ରାହମ୍ ଲିଙ୍କନ ବେଶିଦିନ ରହି ପାରିଲେ ନାହିଁ । ତାର ପରବର୍ଷ ଅପ୍ରେଲ ୯ ତାରିଖରେ ସାରା ଦେଶରେ ଶାନ୍ତି ସ୍ଥାପନ କରାଗଲା । ସେହି ମାସର ୧୪ ତାରିଖରେ ଗୋଟିଏ ରଙ୍ଗମଞ୍ଚକୁ ନାଟକ ପରିଦର୍ଶନ ପାଇଁ ତାଙ୍କ ସ୍ତ୍ରୀଙ୍କ ସହିତ ଅବ୍ରାହମ୍ ଲିଙ୍କନ ଯାଇଥିଲେ । ସେଠାରେ ଜଣେ ଅତତାୟୀ ଦକ୍ଷିଣ ରାଷ୍ଟ୍ରବାସୀ ଧର୍ମାନ୍ଧ ଜଣେ ଗୋରା ଅଭିନେତାଙ୍କ ଗୁଳି ଚୋଟରେ ସେ ପ୍ରାଣ ହରାଇ ଥିଲେ । ତାଙ୍କର ମର-ଶରୀର ଲୁଚିଗଲେ ମଧ୍ୟ କେବଳ ନିଗ୍ରୋ କାହିଁକି ସେ ସମଗ୍ର ନିଷ୍ପେଷିତ ମାନବର ତ୍ରାଣକର୍ତ୍ତା ରୂପେ ସବୁଦିନ ପାଇଁ ଲୋକ ପ୍ରାଣରେ ଅମର ରହିଛନ୍ତି ଓ ରହିବେ ।

ନିଗ୍ରୋମାନେ ହେଉଛନ୍ତି କଳାଲୋକ । ଏପର୍ଯ୍ୟନ୍ତ ଆମେରିକାର କଳା ଗୋରାର ଭେଦଭାବ ସଂପୂର୍ଣ୍ଣ ଯାଇ ନାହିଁ । ପ୍ରମାଣ ସ୍ୱରୂପ ଏବେ ମଧ୍ୟ ନିଗ୍ରୋ ନେତା ଡାକ୍ତର ମାର୍ଟିନ୍ ଲୁଥର କିଙ୍ଗ୍‌ଙ୍କୁ ହତ୍ୟା କରାଯାଇଛି । ମାନବ ସମାଜରେ ଧର୍ମ ଓ ଜାତିବର୍ଣ୍ଣ ନିର୍ବିଶେଷରେ ଏକ ସାମ୍ୟଭାବ ଦୃଢ଼ କରିବାର କାର୍ଯ୍ୟ କ୍ଷେତ୍ରରେ ପୂର୍ଣ୍ଣ ପ୍ରଚେଷ୍ଟା ଯାଇ ନାହିଁ । ଦକ୍ଷିଣ ଆଫ୍ରିକା ଓ ଅଷ୍ଟ୍ରେଲିଆ କଥାତ ସମସ୍ତେ ଜାଣନ୍ତି । କେବଳ ନିଗ୍ରୋ କାହିଁକି ଆଜି ପର୍ଯ୍ୟନ୍ତ ଭାରତୀୟମାନେ ସେଠାରେ କଳାଲୋକ ପରି ନିର୍ଯ୍ୟାତିତ ହେଉଛନ୍ତି ।

ଭାରତ ସ୍ୱାଧୀନତା ପାଇବା ପରଠାରୁ ପୂର୍ଣ୍ଣ ପ୍ରାଣରେ ଆଦିବାସୀ ଓ ହରିଜନମାନଙ୍କୁ ଯେପରି ପୂର୍ଣ୍ଣ ମାନବିକ ଅଧିକାର ଦେବାରେ ବ୍ୟସ୍ତ, ତାହା ଦେଖି ଆମ ଦେଶର ଲୋକେ ନିଜକୁ ସୁସଭ୍ୟ ବୋଲି ଭାବୁଥିବା ଗୋରାଙ୍କର ଏ ପ୍ରକାର ଭେଦଭାବ ସହଜରେ ବୁଝି ପାରିବେ ନାହିଁ ।

ତଥାପି ଗୋରାଙ୍କ ସମାଜରେ ପୁଣ୍ୟଶ୍ଳୋକ ଓ ପୁଣ୍ୟପ୍ରାଣ ଆବ୍ରାହମ୍ ଲିଙ୍କନଙ୍କ ଆଦର୍ଶ ସେଠାକାର ସବୁ ସମାଜର ବାୟୁମଣ୍ଡଳରେ ମିଶି ଯାଇଛି । ଲୋକେ ମନରେ ଯାହା ଭାବନ୍ତୁ ନା କାହିଁକି ଆବ୍ରାହମ୍‌ଙ୍କ କଥା ପଡ଼ିଲେ ଆଜି ସେମାନେ ନତମସ୍ତକ । ମାନବସମାଜରେ ଏହି ନିତ୍ୟ ରୋଗର ନିବାରଣ ପାଇଁ ବୁଦ୍ଧଦେବ ଥରେ ପ୍ରଚାର କରିଥିଲେ, "ସମସ୍ତେ ସୁଖୀ ରହନ୍ତୁ, ସମସ୍ତେ ନିରୋଗ ରହନ୍ତୁ, ସମସ୍ତେ ଜଗତର ମଙ୍ଗଳ ଦେଖନ୍ତୁ, କେହି ଦୁଃଖରେ ନ ରହନ୍ତୁ ।" ପୁଣ୍ୟପ୍ରାଣ ଆବ୍ରାହମ୍ ଲିଙ୍କନ ବୁଦ୍ଧଙ୍କ ଭଳି ଏ କ୍ଷେତ୍ରରେ ଯଶସ୍ୱୀ । ତାଙ୍କର ଯଶ କାଳ କାଳ ଧରି ଅମର ହୋଇ ରହି ଆସୁଅଛି ଓ ରହିବ ମଧ୍ୟ ।

———



ଅତି ପ୍ରାଚୀନ ଯୁଗରେ ମନୁଷ୍ୟ ପୃଥିବୀର ଆୟତନ ଓ ଆକୃତି ସମ୍ବନ୍ଧରେ ଅନଭିଜ୍ଞ ଥିଲା । ନିଜ ଦେଶ ବ୍ୟତୀତ ପୃଥିବୀର ଅନ୍ୟାନ୍ୟ ଦେଶ ତଥା ମହାଦେଶ ସମ୍ପର୍କରେ ତା'ର କଳ୍ପିତ ଧାରଣା ଥିଲା ବୋଲି ଅନୁମାନ କରାଯାଏ । ସୁତରାଂ ତତ୍କାଳୀନ ବିଭିନ୍ନ ଅଞ୍ଚଳର ବସବାସ କରୁଥିବା ଲୋକେ ପରସ୍ପରକୁ ଜାଣି ପାରୁ ନ ଥିଲେ ।

କ୍ରମେକ୍ରମେ ଦେଶର ବିପୁଳ ବିଭବ ସତ୍ତ୍ୱେ ଏବଂ ବ୍ୟବସାୟ, ବାଣିଜ୍ୟ ତଥା ସମର ଅଭିଯାନ ପ୍ରଭୃତି ନାନା କାରଣ ଯୋଗୁ ପୃଥିବୀର ସମସ୍ତ ଲୋକ ଆଜି ପରସ୍ପର ମଧ୍ୟରେ ସୁପରିଚିତ ।

ଆଜି ଆମର ଇତିହାସ ପ୍ରମାଣ ଦିଏ ଯେ ମନୁଷ୍ୟ ସର୍ବପ୍ରଥମେ ସ୍ଥଳ ପଥରେ ଦେଶ ବିଦେଶ ଭ୍ରମଣ କରିବାକୁ ବାହାରିଲା ଏଥିପାଇଁ

ତାଙ୍କୁ ନାନା ବିପଦ ଆପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତା'ପରେ ଆରମ୍ଭ କରିଥିଲା ଜଳଯାତ୍ରା । ଆକାଶର ନକ୍ଷତ୍ରମାନଙ୍କର ଅବସ୍ଥିତି ଓ ବାୟୁର ଗତିବିଧି ଠଉରାଇ ସମୁଦ୍ର ଯାତ୍ରା କରୁଥିଲାବେଳେ କେତେକ ନାବିକ ମଧ୍ୟ କ୍ଷୁଧା, ତୃଷା, ଅନାହାର ଓ ରୋଗ ବ୍ୟାଧିରେ ପଡ଼ି ପ୍ରାଣ ହରାଇଛନ୍ତି । କେତେବେଳେ ବା ସାଗରସ୍ଥିତ ଲୁକ୍କାୟିତ ପର୍ବତ ପାହାଡ଼ରେ ନିଜର ବୋଇତ ବାଧାପାଇ ସଲିଳସମାଧି ନେଇଛନ୍ତି । ଆଉ କେତେକ ସମୟରେ ଅଭିଯାନକାରୀ ମଧ୍ୟ ଅନୁନ୍ନତ ଅଧିବାସୀଙ୍କ କଠୋର ନିର୍ଯ୍ୟାତନାରେ ପଡ଼ି ପ୍ରାଣ ଦେଇଛନ୍ତି ।

ତଥାପି ମନୁଷ୍ୟ ନିରୁତ୍ସାହ ନ ହୋଇ ନିଜର ଉଦ୍ୟମ, ଧୈର୍ଯ୍ୟ ଓ ସାହସିକତା ଯୋଗୁଁ ସମସ୍ତ ବାଧାବିଘ୍ନକୁ ଏଡ଼ାଇଦେଇ ଆଜି ଦୁନିଆକୁ ଆୟତ୍ତ କରି ପାରିଛି ।

ବହୁଦିନ ପୂର୍ବେ ଭୂଗୋଳ ବହି ପରୀକ୍ଷାରେ ପଢ଼ିଥିଲି ଆଫ୍ରିକାକୁ କାହିଁକି ତମସାଚ୍ଛନ୍ନ ମହାଦେଶ କହନ୍ତି ? ସେ କଥା ଅଳ୍ପ ମନେ ପଡ଼ୁଛି । କିନ୍ତୁ ଆଜି ସେ ତମସାଚ୍ଛନ୍ନ ମହାଦେଶ ବୋଲି କହୁ ନାହିଁ । ସେଠାରେ ବର୍ତ୍ତମାନ ମରୁଭୂମିରେ ମଟର ଧାଉଁଛି । ଅରଣ୍ୟରେ ଚଳଚ୍ଚିତ୍ରର ଛବି ହସିଉଠିଛି । ଆକାଶରେ ଜାହାଜ ଉଡ଼ୁଛି । ସଭ୍ୟ ଜଗତ ସଙ୍ଗେ ଆଫ୍ରିକା ତାର କାନ୍ଧକୁ କାନ୍ଧ ମିଳାଇ ଚାଲିଛି ପ୍ରଗତି ପଥରେ । ଏସବୁ ସମ୍ଭବ ହୋଇପାରିଛି କେବଳ ବୀର ମହାନୁଭବ ଡେଭିଡ଼୍ ଲିଭିଂଷ୍ଟୋନ୍‌ଙ୍କ ପ୍ରତିଜ୍ଞା ବଳରେ ।

ଆଫ୍ରିକାର ଚତୁର୍ଦ୍ଦିଗ କି ନିବିଡ଼ ଜଙ୍ଗଲ ! କି ଭୟଙ୍କର ବିକଟ ଚିତ୍କାର ପଶୁ ପକ୍ଷୀଙ୍କର ! କି ଉପଦ୍ରବ ହିଂସ୍ରଜନ୍ତୁମାନଙ୍କର ! କି ବର୍ବରୋଚିତ ବ୍ୟବହାର ସେଠାର ନରମାଂସଭୋଜୀ ଅଧିବାସୀମାନଙ୍କର ! ଦେଖିବା କଥା ଦୂରେଥାଉ, ଶୁଣିଲା ବେଳକୁ ଆଶ୍ଚର୍ଯ୍ୟ ଲାଗୁଛି । ଶରୀର ହୃତ୍‌କମ୍ପ ହେଉଛି । ଧନ୍ୟ ଲିଭିଂଷ୍ଟୋନ୍ ! ଧନ୍ୟ ତୁମର ପିତା-ମାତା । ତୁମେ କିପରି ଏହି କଳ୍ପନାତୀତ ପ୍ରାୟ ୧୨୮୦ କିଲୋମିଟର

ବ୍ୟାପୀ ନିକାଞ୍ଚନ ଜଙ୍ଗଲମୟ ଦେଶକୁ ବାଟ ଫିଟାଇ ପାରିଲ । ତୁମର ଏପରି ଅସୀମ ସାହସ ଓ ଧୈର୍ଯ୍ୟକୁ ଶତ ଧନ୍ୟବାଦ ।

ଏହି ମହାନୁଭବ ଡେଭିଡ୍ ଲିଭିଂଷ୍ଟୋନ୍ ସେହି ବିପଦ ଦୁର୍ଭେଦ୍ୟ ସ୍ଥାନକୁ ଅତି ଦୁଃଖ ଓ କଷ୍ଟକୁ ବରଣ କରି ଲୋକମାନଙ୍କର ସୁଖ ଏବଂ ସ୍ୱାଚ୍ଛନ୍ଦ୍ୟ ପ୍ରତି ଅନୁଧ୍ୟାନ ଦେଇ କିପରି ଭାବରେ ବାଟ ଫିଟାଇଥିଲେ ତାହା ଏଠାରେ ଲୁହାପାଇଛୁ ।

ସ୍କଟ୍‌ଲଣ୍ଡ ଦେଶ ଅନ୍ତର୍ଗତ ବାଣ୍ଟାୟାରଠାରେ ୧୮୧୩ ଖ୍ରୀଷ୍ଟାବ୍ଦରେ ଗୋଟିଏ ଦରିଦ୍ର ସୂତା ବ୍ୟବସାୟୀଙ୍କ କୋଳରେ ଲିଭିଂଷ୍ଟୋନ୍‌ଙ୍କର ଜନ୍ମ । ତାଙ୍କର ପିତା ଅତି ଦରିଦ୍ର ଥିବାରୁ ସ୍କୁଲ କଲେଜରେ ପାଠପଢ଼ି ପାରି ନଥିଲେ । ତେଣୁ ନୈଶ୍ୟ ବିଦ୍ୟାଳୟକୁ ଯାଇ ପାଠ ପଢ଼ୁଥିଲେ ଓ ଦିନରେ ଗୋଟିଏ କାରଖାନାକୁ ଯାଇ ସେ କାମ କରୁଥିଲେ । ଅଧ୍ୟୟନ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ସେ ବହୁ କଷ୍ଟ ସ୍ୱୀକାର କରି ଡାକ୍ତରୀ ପାସ୍ କରିଥିଲେ । ୧୮୪୦ ଖ୍ରୀଷ୍ଟାବ୍ଦରେ ଲିଭିଂଷ୍ଟୋନ୍ ଧର୍ମପ୍ରଚାରକ ହିସାବରେ ଆଫ୍ରିକାର କେପ୍‌ଟାଉନ୍‌କୁ ଯାଇଥିଲେ । ସେଠାରେ ପ୍ରଧାନ ଧର୍ମପ୍ରଚାରକ ମୋଫାଟଙ୍କର କନ୍ୟାକୁ ବିବାହ କରିଥିଲେ । ଏହି ଧର୍ମ ପ୍ରଚାର କରୁଥିବାବେଳେ ସେଠାରେ ଦେଖିଲେ ଯେ ଆଫ୍ରିକାର ଅନୁନ୍ନତ ଲୋକଙ୍କୁ ଆରବ ଓ ପର୍ତ୍ତୁଗୀଜମାନେ ଖରିଦକରି ନେଇ ଦାସତ୍ୱ କରି ରଖୁଛନ୍ତି । ଏ କଥା ଦେଖି ସେ ସହ୍ୟ କରି ପାରିଲେ ନାହିଁ । ତେଣୁ ଏହାକୁ ଲୋପ କରିବା ହେଲା ଲିଭିଂଷ୍ଟୋନ୍‌ଙ୍କ ଅନ୍ୟଏକ ପ୍ରତିଜ୍ଞା ।

ଏଠାରେ ଆମର ଆଲୋଚନାର ବିଷୟବସ୍ତୁ ହେଲା ସେ କିପରି ଭାବରେ ଏତେବଡ଼ ଦୁର୍ଗମ ପଥକୁ ଆବିଷ୍କାର କରିଥିଲେ । ଆଫ୍ରିକାର ଅଭ୍ୟନ୍ତର ଅଞ୍ଚଳଗୁଡ଼ିକୁ ଅନୁସନ୍ଧାନ କରିବାକୁ ଯେତେବେଳେ ସେ ମନରେ ସ୍ଥିର କଲେ, ସେହି ମୁହୂର୍ତ୍ତରୁ ପ୍ରତିଜ୍ଞା କଲେ ଯେ କଳେ ବଳେ କୌଶଳେ ଯେପରି ହେଉ ସେ ନିଶ୍ଚୟ ଅଜ୍ଞାତ ଦେଶ ଅଭ୍ୟନ୍ତରଗୁଡ଼ିକୁ ଅନୁସନ୍ଧାନ କରିବେ । ଜଣେ ସାଧାରଣ ଲୋକ ପକ୍ଷରେ ଏଭଳି ଚିନ୍ତା କରିବା କିଛି କମ କଥା ନୁହେଁ ।

ଯାହାହେଉ ଏଥିକୁ ପ୍ରାୟ ଶହେବର୍ଷ ତଳେ ଅସୀମ ସାହସିକ ଦୟାର ଅବତାର ଡେଭିଡ୍ ଲିଭିଂଷ୍ଟୋନ୍ ସଂସାର ମାୟା ମମତାକୁ ଭୁଲିଯାଇ ଈଶ୍ୱରଙ୍କୁ ଶରଣ କରି ଅଣ୍ଟାଭିଡ଼ି ପଶିଲେ ଦୁର୍ଗମ ଜନଶୂନ୍ୟ ଜଙ୍ଗଲ ଭିତରେ । ସଙ୍ଗରେ ନେଇଥିଲେ ଗୁଡ଼, କଫି, ଔଷଧ, ବିସ୍କୁଟ, ଚିନି, ଲୁଗା, ବହି ଓ ଆବଶ୍ୟକୀୟ କେତେକ ବୈଜ୍ଞାନିକ ଯନ୍ତ୍ରପାତି । ଏହାଛଡ଼ା ଶୀକାର କରିବା ପାଇଁ ବନ୍ଧୁକ, ବାରୁଦ ଓ ଆଶ୍ରୟ ନେବା-ପାଇଁ ଖଣ୍ଡିଏ ତମ୍ବୁ ସଙ୍ଗରେ ନେଇଥିଲେ । ସବୁଠାରୁ ଅତି ଦରକାରୀ ଜିନିଷ ଖଣ୍ଡିକ ହେଲା ତାଙ୍କର ସଙ୍ଗରେ ନେଇଥିବା ମ୍ୟାଜିକ୍ ଲଣ୍ଠନଟି । ସେବେଳର କଥାକୁ ବର୍ତ୍ତମାନ କଳ୍ପନା ଭିତରକୁ ଆଣି ପାରିବା କି ନାହିଁ ତାହା ସନ୍ଦେହ । କିନ୍ତୁ କେତେକ ଜଙ୍ଗଲି ଲୋକ ତାଙ୍କର ନେତ୍ରିତ୍ୱ-ପଥକୁ ମୁକ୍ତ କରି ଧାଡ଼ିଧରି ଆଗେ ଆଗେ ଚାଲିଲେ । ପଛରେ ତାଙ୍କର ବିଜୟୀନେତା ଡେଭିଡ୍ ଲିଭିଂଷ୍ଟୋନ୍ ଗୋଟିଏ ବଳଦ ଉପରେ ବସି ଯାଉଥାନ୍ତି ।

୧୮୪୦ ଖ୍ରୀଷ୍ଟାବ୍ଦରେ ସେ କେପ୍‌ଟାଉନରେ ପ୍ରଥମେ ପହଞ୍ଚି ଦେଖିଲେ ସମସ୍ତ ପାଦ୍ରୀମାନେ ଆଫ୍ରିକାର ଦକ୍ଷିଣ ଭାଗରେ ଠୁଳ ହୋଇଛନ୍ତି । ମହାଦେଶଟିର ଭିତର ଅଂଶ ଅଜ୍ଞ ନିବିଡ଼ ଜଙ୍ଗଲରେ ପୂର୍ଣ୍ଣ । ସେଠାରେ ୬ମାସ ପର୍ଯ୍ୟନ୍ତ ଆଦିବାସୀଙ୍କ ସହିତ ମିଳାମିଶା କରି ସେମାନଙ୍କ ଭାଷାକୁ ଆୟତ୍ତ କଲେ । ଏହି ସମୟ ମଧ୍ୟରେ ମାଡ଼ବାସେ ନାମକ ସ୍ଥାନର ଅନ୍ଧକାରାଚ୍ଛନ୍ନ ଜଙ୍ଗଲ ମଧ୍ୟରେ ଗୋଟିଏ ସିଂହ ସହିତ ତାଙ୍କର ଲଢ଼େଇ ହେଲା । ଜନୈକ କଫ୍ରି ସାହାଯ୍ୟରେ ସିଂହକୁ ମାରି ସେ ମୃତ୍ୟୁ ମୁଖରୁ ଉଦ୍ଧାର ପାଇଲେ । ତାପରେ ସେଠାରୁ ସେ ନେଗ୍ମୀ-ହ୍ରଦ ଅବିଷ୍କାର କରିବା ପାଇଁ ବାହାରିଲେ । ତାର କିଛିଦିନ ପରେ ୧୮୪୯ ଖ୍ରୀଷ୍ଟାବ୍ଦ ଅଗଷ୍ଟମାସ ୧ ତାରିଖରେ ନେଗ୍ମୀହ୍ରଦ ଆବିଷ୍କାର କରିଥିଲେ ।

୧୮୫୨ ଖ୍ରୀ: ଅ: ଜୁନ ମାସରେ କେପ୍‌ଟାଉନ ଛାଡ଼ି ଲୋଆଣ୍ଡା ଓ ତାପରେ କୁଇଲିମେନ୍‌କୁ ଯିବେ ବୋଲି ସିଦ୍ଧାନ୍ତ କଲେ । ବାଟରେ

ବୋର୍ ଜାତି ତାଙ୍କୁ ବହୁତ ହଇରଣ କଲେ । ଦୀର୍ଘ ୭ ମାସ ମଧ୍ୟରେ ନାନା ଅସୁବିଧା ସତ୍ତ୍ୱେ ଅରେଞ୍ଜ ନଦୀ ପାରହୋଇ ଡିସେମ୍ବର ମାସ ବେଳକୁ ମରୁଭୂମିଆଡ଼େ ଅଗ୍ରସର ହେଲେ ।



( ଲିଭିଂଷ୍ଟୋନ୍‌ଙ୍କ ସିଂହ ସହିତ ଯୁଦ୍ଧ )

ଆଗକୁ କାଲାହାରି ମରୁଭୂମି । ନାଆଁଟି ଶୁଣିଲାବେଳକୁ ଦେହ ଶୀତେଇ ଉଠୁଛି । ଅବଶ୍ୟ ଏହା ମରୁଭୂମି ପରି ଯଥେଷ୍ଟ ନୁହେଁ ତଥାପି ଏତେ ବଡ଼ ଦୁର୍ଗମ ମରୁପ୍ରାନ୍ତରକୁ ଟପିବା କମ୍ ଦୁଃସାଧ୍ୟକର କଷ୍ଟ ନୁହେଁ । ବାସ୍ତବିକ ତୃଷାର ଯନ୍ତ୍ରଣା ସଙ୍ଗେ ମରୀଚିକାର ପ୍ରତାରଣା ଲିଭିଂଷ୍ଟୋନଙ୍କୁ ଏହି ଦୁର୍ଗମ ପଥରେ ଅତି ବ୍ୟସ୍ତ କରି ପକାଇଥିଲା । ତଥାପି ଏଭଳି ବିପଦକୁ ବରଣ କରି ସେ ପ୍ରତିଜ୍ଞା କଲେ ଯେ, ଆଫ୍ରିକାର ପୂର୍ବରୁ ପଶ୍ଚିମ ପଟକୁ ପ୍ରାୟ ୧୨୮୦ କିଲୋମିଟର ଦୁର୍ଗମ-ପଥକୁ ସେ ଅତିକ୍ରମ କରିବେ । ଏଥିପାଇଁ ସେତେବେଳେ ସେ ତାଙ୍କ ଶ୍ୱଶୁରଙ୍କ ପାଖକୁ ଚିଠିଏ ଲେଖିଥିଲେ, "ମୁଁ [illegible] ପଛାଇବି ନାହିଁ ।" ପ୍ରାୟ ୧୨୮୦ କିଲୋମିଟର [illegible],

ଅଗମ୍ୟ ଜନଶୂନ୍ୟ; ଜଳଶୂନ୍ୟ ଓ ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲରେ ଭ୍ରମଣ କରିବା ଅତି ଦୁଃସାଧ୍ୟ । ତଥାପି ଅତ୍ୟନ୍ତ ପୀଡ଼ିତ ଓ ଦୁର୍ବଳ ଅବସ୍ଥାରେ ଭ୍ରମଣ କରିବା ଲିଭିଂଷ୍ଟୋନ୍‌ଙ୍କର ଏକ ଅଦ୍ଭୁତ ସାଧନାର ପରିଚୟ । ମନର ବଳ ଉପରେ ଶରୀରର ସାମର୍ଥ୍ୟ ନିର୍ଭର କରିବା ସ୍ୱାଭାବିକ । ଲିଭିଂଷ୍ଟୋନ୍‌ଙ୍କର ମନର ବଳ ଯୋଗୁଁ ପଥ ମଧ୍ୟରେ ଦୁଃଖ ଯନ୍ତ୍ରଣା ଭୋଗୁଥିଲେ ମଧ୍ୟ ତାଙ୍କୁ ବାଧି ନଥିଲା । ସେ ୧୮୫୩ ଖ୍ରୀଷ୍ଟାବ୍ଦରେ ମେ ମାସ ୨୩ ତାରିଖରେ ଜାମ୍ବେଜୀ ନଦୀର ଦକ୍ଷିଣ ପଟେ ଲିନିୟାନ୍ତି ସହରରେ ଯାଇ ପହଞ୍ଚିଲେ । ଏଠାକାର କେତେକ ଅଧିବାସୀ ଲିଭିଂଷ୍ଟୋନ୍‌ଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ କରିଥିଲେ । ମେ ମାସଠାରୁ ନଭେମ୍ବର ମାସ ପର୍ଯ୍ୟନ୍ତ ସେ ସେଠାରେ ଅବସ୍ଥାନ କରିଥିଲେ । ଇତ୍ୟବସରରେ



କେତେକ କାଫ୍ରି ଜ୍ୱରର ଆକ୍ରମଣରେ ପୀଡ଼ିତ ହେବାରୁ ଲିଭିଂଷ୍ଟୋନ୍ ଡାକ୍ତର ହିସାବରେ ତାଙ୍କୁ ଔଷଧ ଖାଇବାକୁ ଦେଲେ । ଏହାଦ୍ୱାରା କେତେକ କାଫ୍ରି ମନରେ ସନ୍ଦେହ ଆଣିଲେ ଯେ, ତାଙ୍କୁ ମାରିଦେବାକୁ ଲିଭିଂଷ୍ଟୋନ୍ ବିଷ ପ୍ରୟୋଗ କରିଅଛନ୍ତି । ତେଣୁ ସେମାନେ ତାଙ୍କୁ ହତ୍ୟା କରିବାକୁ ଷଡ଼ଯନ୍ତ୍ର କଲେ । ମାତ୍ର ସେମାନେ ରୋଗମୁକ୍ତ ହେବାରୁ ଲିଭିଂଷ୍ଟୋନ୍‌ଙ୍କୁ ଶେଷରେ ଆଦର ଓ ପୂଜା କଲେ ।

ତା'ପରେ ସେ ସେଠାରୁ ଅନୁଚରମାନଙ୍କୁ ସାଙ୍ଗରେ ନେଇ ଗଲେ ଉତ୍ତରାଭିମୁଖରେ । ପଡ଼ିଲା ନିବିଡ଼ ଜଙ୍ଗଲ ।

ଲିଭିଂଷ୍ଟୋନ୍ ଏହି ନିବିଡ଼ ଜଙ୍ଗଲ ଭିତରେ କେତେକ ପଶୁ-ପକ୍ଷୀଙ୍କର ଯେଉଁ ତଥ୍ୟ ନିରୂପଣ କରିଥିଲେ ତାହା ଜାଣିଲେ ଆମକୁ ଆଶ୍ଚର୍ଯ୍ୟ ଲାଗିବ । ଗୋଟାଏ ପ୍ରକାର ପକ୍ଷୀ ସେଠାରେ ଅଛନ୍ତି ସେମାନେ କୁମ୍ଭୀରର ପରମବନ୍ଧୁ । ଏପରିକି କୁମ୍ଭୀରର ପେଟ ଭିତରକୁ ଏହି ପକ୍ଷୀମାନେ ଅନେକ ସମୟରେ ପଶି ଯାଆନ୍ତି । ତାହାର କାରଣ ହେଲା କୁମ୍ଭୀର ଯେତେବେଳେ ପାଣିରେ ପଡ଼େ ସେତେବେଳେ ଜଳରେ ଥିବା ବିଭିନ୍ନ ପ୍ରକାର ଛୋଟଛୋଟ କୀଟ ସବୁ କୁମ୍ଭୀର ପାଟିଦେଇ ପେଟ ଭିତରକୁ ପଶି ଯାଆନ୍ତି । କୁମ୍ଭୀରକୁ ଯେତେବେଳେ ଯନ୍ତ୍ରଣା ହୁଏ, ସେ ପାଟି ମେଲାକରି ପଡ଼ିଯାଏ । ଏହି ପକ୍ଷୀଟି ତା ପାଟି ଭିତରଦେଇ ପେଟକୁ ଯାଇ ସବୁ ପୋକକୁ ଖାଇସାରି ପୁଣି ବାହାରି ଆସେ । ଏଥିରେ କୁମ୍ଭୀରର କମ୍ପା ପର୍ଯ୍ୟନ୍ତ କିଛି କ୍ଷତି ହୁଏନାହିଁ । ଏହି ଜଙ୍ଗଲରେ ଆଉ ଗୋଟିଏ ପ୍ରକାର ବିଚିତ୍ର ପକ୍ଷୀ ସେ ଦେଖିବାକୁ ପାଇଥିଲେ । ତାହାର ମୁହଁ ଓ ଥଣ୍ଟ ଠିକ୍ ଚଢ଼େଇର ଆକୃତି କିନ୍ତୁ ଦେହଟି ଅବିକଳ ସାପ ପରି । ଏ ଜଙ୍ଗଲ ଭିତରେ ବହୁ ସିଂହ, ହାତୀ, ଗଣ୍ଡା, ମୃଗ, ଜେବ୍ରା ପ୍ରଭୃତି ଦେଖିଥିଲେ ଓ ସେ ମଧ୍ୟ କେତେକ ଶୀକାର କରିଥିଲେ ।

୧୮୫୪ ଖ୍ରୀ: ମେ ମାସ ୩୧ ତାରିଖରେ ସେ ଲୋଆଣ୍ଡାରେ ପହଞ୍ଚିଲେ । ସେତେବେଳକୁ ବାରମ୍ବାର ଜ୍ୱର ଆକ୍ରମଣ ଯୋଗୁ ତାଙ୍କ ଶରୀର ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଲାଣି । ମାତ୍ର କେତେକ ଇଉରୋପୀୟ ଡାକ୍ତରଙ୍କ ଚେଷ୍ଟା ଫଳରେ ସେ ଆରୋଗ୍ୟ ହେଲେ । ପୁଣି ସେଠାରୁ ଜାମ୍ବେଜୀ ନଦୀର ପୂର୍ବପଟ ସୀମାଦେଇ ଯାତ୍ରାକଲେ । କିଛିଦିନ ପରେ ଗୋଟିଏ ଅପୂର୍ବ ଦୃଶ୍ୟ ତାଙ୍କର ଦୃଷ୍ଟିଗୋଚର ହେଲା । ସଙ୍ଗରେ ଥିବା କାଫ୍ରିମାନଙ୍କୁ ସେ ପଚାରିଲେ—'ତୁମେ କହିପାରିବ କ ପ୍ରଚୁର ଧୂଆଁପରି ଗୁଡ଼ାଏ କ'ଣ ଆକାଶ ମାର୍ଗକୁ ଉଠୁଛି ଓ ସେ ଗର୍ଜ୍ଜନ କରୁଛି ।' କାଫ୍ରିମାନେ କହିଲେ, "ବାବୁ, ସେ ଦୃଶ୍ୟ ଆମ ବାପ

ଗୋସହାପଙ୍କ ଅମଳରୁ ଦେଖି ଆସୁଛୁ । ସେ ପରା ଦୈତ୍ୟ ଦାନବ-ମାନଙ୍କର କାର୍ଯ୍ୟ । ଆପଣ ସେ ଆଡ଼କୁ ଯାଆନ୍ତୁ ନାହିଁ । ଆସନ୍ତୁ ଅନ୍ୟବାଟରେ ଆମେ ପଳେଇଯିବା ।" ଲିଭିଂଷ୍ଟୋନ ମନେ ମନେ ଭାବିଲେ ଯେ, ସେମାନେ ଅଜ୍ଞ । ପୁଣି ସେହିଆଡ଼କୁ କିଛିଦୂର ଅଗ୍ରସର ହୋଇ ଦେଖିଲେ ଜାମ୍ବେଜୀ ନଦୀର ଜଳ ଭୀଷଣ ବେଗରେ ୧୨୯ ମିଟର ଉଚ୍ଚରୁ ତଳକୁ ପଡ଼ୁଛି । ସେ ଏହାକୁ ଦେଖି ମୁଗ୍ଧ ହେଲେ ଓ ତାର ନାମ ମହାରାଣୀ ଭିକ୍ଟୋରିଆଙ୍କର ନାମାନୁସାରେ "ଭିକ୍ଟୋରିଆ ଜଳପ୍ରପାତ" ଦେଲେ । ଏହା ୧୮୫୫ ସାଲ ୨୨ ତାରିଖର ଖବର । ଦୀର୍ଘ ୧୬ବର୍ଷପରେ ୧୮୫୬ ମସିହା ମେ ମାସ ୨୦ ତାରିଖ କ୍ୱିଲିମେନ୍‌ରେ ଯାଇ ପହଞ୍ଚିଲେ । ସେଠାରେ ଦେହର ଅସୁସ୍ଥତା ଯୋଗୁ ଜଳ ପଥରେ ଇଂଲଣ୍ଡ ଫେରି ଆସିଲେ । ଆଫ୍ରିକାର ନିବିଡ଼ ଜନଶୂନ୍ୟ ଜଙ୍ଗଲ ଆବିଷ୍କାରର ପ୍ରଥମ ଅଙ୍କ ଶେଷକରି ଫେରିବାପରେ ମହାରାଣୀ ଭିକ୍ଟୋରିଆ କିଛିଦିନ ପାଇଁ ଲିଭିଂଷ୍ଟୋନ୍‌ଙ୍କ ପାଖରେ ବସି କାହାଣୀ ସବୁ ଶୁଣିଲେ । ଏଥିପାଇଁ ଇଂଲଣ୍ଡର ଲୋକ ତାଙ୍କୁ ତାଙ୍କର ସମ୍ମାନ ପ୍ରଦର୍ଶନ ଲାଗି ଭିକ୍ଟୋରିଆ ପଦକ ଉପହାର ଦେଇଥିଲେ ।

ଲିଭିଂଷ୍ଟୋନ୍ ଗୃହରେ ବସି ରହିବାକୁ ଆଉ ଭଲ ପାଇଲେ ନାହିଁ । ସମସ୍ତଙ୍କର ଆଦର ଅଭ୍ୟର୍ଥନା ଏବଂ ସ୍ତ୍ରୀପୁତ୍ର ପ୍ରଭୃତିଙ୍କର ମାୟାମମତାକୁ ବର୍ଜନ କରି ଦ୍ୱିତୀୟ ଥର ଆବିଷ୍କାର ପାଇଁ ବାହାରି ପଡ଼ିଲେ ଆଫ୍ରିକା ମହାଦେଶକୁ । ଏହା ୧୮୫୮ ଖ୍ରୀ:ର କଥା । ସେ ଦୀର୍ଘ ଏକବର୍ଷ ପରେ ୧୮୫୯ ସେପ୍ଟେମ୍ବର ୧୬ ତାରିଖରେ ନିୟାସା ବୋଲି ଆଉ ଗୋଟିଏ ହ୍ରଦ ଆବିଷ୍କାର କଲେ ।

ଏହିଥର ଆବିଷ୍କାର ସମୟରେ ବାଟରେ ଦାସ ବ୍ୟବସାୟୀଙ୍କ ସହିତ ଯେତେବେଳେ ସାକ୍ଷାତ ହୁଏ, ତାଙ୍କ ସହିତ ଯୁଦ୍ଧକରି କାଫ୍ରିମାନଙ୍କୁ ମୁକ୍ତ କରି ଦେଉଥିଲେ । ବେଣ୍ଟ ଉପରେ ବୋଇଡ଼ା ଭଳି ସେ ଆଉ ଗୋଟିଏ ମର୍ମନ୍ତୁଦ ଖବର ପାଇଲେ । ଏକେତ ସେ ବିପଦ ଆପଦକୁ ସ୍ୱଇଚ୍ଛାରେ ବରଣ କରି ଭୋଗୁଥିଲେ । ମାତ୍ର ଏହି ଭ୍ରମଣ ସମୟରେ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ସମ୍ବାଦ ସେ ପାଇଲେ । ସେତେବେଳେ

ଅନ୍ୟ କେହି ହୋଇଥିଲେ ତାଙ୍କର ଭ୍ରମଣ ସେଠାରୁ ବୋଧହୁଏ ସ୍ଥଗିତ ରଖିଥାନ୍ତେ, କିନ୍ତୁ ଲିଭିଂଷ୍ଟୋନ୍ ସ୍ତ୍ରୀଙ୍କୁ ପରପାର କରି ଦୁଃଖକୁ ଦୁଃଖ ବୋଲି ନ ମଣି ତାଙ୍କର କର୍ତ୍ତବ୍ୟ ସମ୍ପାଦନରେ ଆଗେଇ ଗଲେ । ଏହି ଘଟଣାଟି ୧୮୬୨ରେ ଘଟିଥିଲା ।

ପୁନରପି ୧୮୬୮ରେ ଲିଭିଂଷ୍ଟୋନ୍ ଶୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ଇଂଲଣ୍ଡ ଫେରିଲେ । ଲୋକେ କଳ୍ପନା କରି ନଥିଲେ ଯେ ପରର ସୁଖ ଓ ସ୍ୱାଚ୍ଛନ୍ଦ୍ୟ ପାଇଁ ଲିଭିଂଷ୍ଟୋନ୍ ନିଜ ଶରୀରକୁ ମାଟିରେ ମିଶାଇ ଦେବେ । ତାଙ୍କର ଦୁର୍ବଳ ଅବସ୍ଥା ଯାହା ଥିଲା ତାହାର ଆଶା କରିବାର କଥା ନୁହେଁ ଯେ ସେ ପୁଣି ଭ୍ରମଣରେ ଯିବେ । ଦୁଇବର୍ଷ ରହିବା ପରେ ଲିଭିଂଷ୍ଟୋନ୍ ୧୮୬୬ ମସିହାରେ ଶେଷଥର ପାଇଁ ଆଫ୍ରିକା ଭ୍ରମଣରେ ବାହାରି ପଡ଼ିଲେ । ଏଥର ଲାଟ ସାହେବ ତାଙ୍କ ଭ୍ରମଣ ପାଇଁ ୧୨ ଜଣ ସିପାହୀ ସଙ୍ଗରେ ପଠାଇ ଥିଲେ । କେତେଦିନ ପରେ ସିପାହୀମାନଙ୍କ ବାଟରେ ଜ୍ୱର ହେବାରୁ ସେ ଲିଭିଂଷ୍ଟୋନ୍‌କୁ ଏକୁଟିଆ ଛାଡ଼ି ପଳାଇ ଗଲେ ।

ଏଥର ଦୁର୍ଗମ ଅରଣ୍ୟ ପଥରେ ସେ ବହୁତ କଷ୍ଟ ପାଇଲେ । ଭୀଷଣ ଜ୍ୱର ମଧ୍ୟ ହେଲା । ଔଷଧପତ୍ର ଓ ଆବଶ୍ୟକୀୟ ଜିନିଷପତ୍ର ତାଙ୍କର ସବୁ ଦୁର୍ବୃତ୍ତମାନେ ଚୋରିକରି ନେଇ ପଳାଇଲେ । ଲିଭିଂଷ୍ଟୋନ୍ ଜାଣିଥିଲେ ଯେ ଏଥର ମୃତ୍ୟୁ ତାଙ୍କର ନିଶ୍ଚିତ ହେବ । ସେ ବିଚଳିତ ନହୋଇ ସେହି ଭଙ୍ଗା ହାଡ଼ରେ ଏକମାତ୍ର କାଫ୍ରି ଭୃତ୍ୟକୁ ସଙ୍ଗରେ ନେଇ ଅଗ୍ରସର ହେଲେ । ୧୮୬୭ ଓ ୧୮୬୮ ଖ୍ରୀ:ରେ ପୂନର୍ବାର ସେ ଯଥାକ୍ରମେ ମୋୟେରୋ ଓ ବେଙ୍ଗ୍‌ୟୁଲ ହ୍ରଦ ଦୁଇଟି ଆବିଷ୍କାର କରିଥିଲେ । ୧୮୬୯ ଖ୍ରୀଷ୍ଟାବ୍ଦ ୧୪ ତାରିଖରେ ଉଜିଜି ସହରରେ ଯାଇ ପହଞ୍ଚିଲେ । ସେଠାରେ ସେ କିଛିଦିନ ଅବସ୍ଥାନ କଲେ ।

ଏଣେ ଯେଉଁ ଦୁର୍ବୃତ୍ତମାନେ ଲିଭିଂଷ୍ଟୋନ୍‌ଙ୍କର ଜିନିଷପତ୍ର ଚୋରିକରି ନେଇ ପଳାୟନ କରିଥିଲେ । ସେମାନେ ଜାଞ୍ଜିବାରରେ ମିଥ୍ୟା ପ୍ରଚାର କଲେ ଯେ କାଫ୍ରିମାନେ ଲିଭିଂଷ୍ଟୋନ୍‌କୁ ମାରି

ଛପାଇଥିଲେ । ଏ ସମ୍ବାଦ ଆମେରିକାର ବଡ଼ ବଡ଼ ସମ୍ବାଦ ପତ୍ରରେ ବାହାରିଲା । ସେଥିରେ ସରକାରଙ୍କ ତରଫରୁ ଘୋଷଣା କରାଗଲା ଯେ ଲିଭିଂଷ୍ଟୋନ୍‌ଙ୍କୁ ଯିଏ ଖୋଜି ଆଣି ଦେବ ଖର୍ଚ୍ଚ ବ୍ୟତୀତ ତାଙ୍କୁ ଷାଠିଏ ହଜାର ଟଙ୍କା ପୁରସ୍କାର ଦିଆଯିବ ।

ଏହାପରେ ଷ୍ଟାନ୍‌ଲି ନାମକ ଜଣେ ବ୍ୟକ୍ତି ଲିଭିଂଷ୍ଟୋନ୍‌ଙ୍କୁ ଖୋଜି ଆଣିବାପାଇଁ ବାହାରିଲେ । ୧୫୦୦ କିଲୋମିଟର ବ୍ୟାପୀ ଦୀର୍ଘ ତମସାଚ୍ଛନ୍ନ ଅରଣ୍ୟ ମଧ୍ୟରେ ଭ୍ରମଣ କଲାବେଳେ ସେ ବହୁକଷ୍ଟ ପାଇଲେ ଏବଂ ତାଙ୍କର ଘୋଡ଼ାଟି ମଧ୍ୟ ସେଠାରେ ମରିଗଲା । ଅବଶେଷରେ ସେ ପର୍ବଣ ପର୍ବର ୧୮୭୧ ଖ୍ରୀଷ୍ଟାବ୍ଦ ନଭେମ୍ବର ତା ୧୦ ରିଖରେ ଉଜିଜିଠାରେ ପହଞ୍ଚିଲେ । ସେଠାରେ ଲିଭିଂଷ୍ଟୋନ୍ ଥିବାର ଖବର ପାଇ ଅତି ଖୁସିହୋଇ ତାଙ୍କ ନିକଟରେ ସେ ଯାଇ ପହଞ୍ଚିଲେ । ତାଙ୍କର ପରିଚୟ ପାଇବା



ପରେ ଉଭୟଙ୍କ ମଧ୍ୟରେ କରମର୍ଦ୍ଦନ ହେଲା । ଏତେଦିନେ ଷ୍ଟାନ୍‌ଲିଙ୍କ ଦୁଃଖ କଷ୍ଟ ସାର୍ଥକ ହେଲା ।

ଷ୍ଟାନ୍‌ଲି ଲିଭିଂଷ୍ଟୋନଙ୍କୁ ଫେରି ଆସିବାକୁ ବହୁତ ଅନୁରୋଧ କଲେ ମାତ୍ର ଲିଭିଂଷ୍ଟୋନ୍ ତାଙ୍କ କଥାରେ ଆଦୌ ରାଜି ହେଲେ ନାହିଁ । ବାଧ୍ୟହୋଇ ଷ୍ଟାନ୍‌ଲି ତାଙ୍କଠାରୁ ଦୁଃଖର ସହିତ ବିଦାୟ ନେଇ ୧୮୭୨ ଖ୍ରୀ ମାର୍ଚ୍ଚ ୧୬ ତାରିଖରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଲିଭିଂଷ୍ଟୋନ୍‌ଙ୍କ ଦୁଃଖ ଦୂର କରିବାପାଇଁ ଗୃହରେ ପହଞ୍ଚି ସେ କିଛି ସାହାଯ୍ୟ ମଧ୍ୟ ପଠାଇ ଥିଲେ ।

ଏଇଥର ହେଲା ଲିଭିଂଷ୍ଟୋନ୍‌ଙ୍କର ଶେଷ ଭ୍ରମଣ । କଷ୍ଟି ପଥରରେ କଷି ହେଲାଭଳି ସେ ସବୁବେଳେ ଦୁଃଖ କଷ୍ଟ ନିର୍ଯ୍ୟାତନାକୁ ସାଦରରେ ବରଣକରି ନେଉଥିଲେ ତାଙ୍କର ପ୍ରତିଜ୍ଞା ପୂରଣ କରିବାକୁ । ଅବସ୍ଥା ବନକୁ ବନ ଅଣଅପୃତ୍ତ ସ୍ତରକୁ ଆସି ପହଞ୍ଚିଲା । ସେ ହଠାତ୍ ଆମାଶୟ ଜ୍ୱରରେ ଆକ୍ରାନ୍ତ ହେବା ଫଳରେ ଅତି ଦୁର୍ବଳ ହୋଇ ପଡ଼ିଲେ । ଏହି ଦୁରବସ୍ଥା ଭିତରେ ମଧ୍ୟ ସେ ଅତି କଷ୍ଟର ସହିତ ଆସି ପହଞ୍ଚିଲେ ଚିତାମ୍ବୋ ଗ୍ରାମରେ । ସେ ସେଠାରୁ ଆଉ ପାଦେହେଲେ ଯାଇ ପାରିଲେ ନାହିଁ । ଏପରିକି ତାଙ୍କ ଘଡ଼ିରେ ମଧ୍ୟ ସେଦିନ ଦମ୍ ଦେଇ ପାରିଲେ ନାହିଁ ।

ହାୟରେ ଦୃଢ଼ଚେତା, କଷ୍ଟତାପୀ, ପରଧର୍ମୀ, ବଳବାନ ପୁରୁଷ ସିଏ । ଆଜି ତାର ପୁଣି ଏ ଅବସ୍ଥା । ସଂସାରରେ ଜନ୍ମ ହେଲେ ସମସ୍ତଙ୍କୁ ଅବଶ୍ୟ ଦିନେନା ଦିନେ ମରିବାକୁ ହେବ ଏହା ସତ, କିନ୍ତୁ ମରିବା ଆଗରୁ ଏଭଳି କାମ କରି ଯାଇଥିବା ଉଚିତ ଯେ କାଳ କାଳ ଧରି ଲୋକେ ତୁମକୁ ଝୁରି ହେଉଥିବେ ।

୧୮୭୩ ମସିହା ଏପ୍ରିଲ ମାସ ୩୦ ତାରିଖ ରାତିରେ ହଠାତ୍ ମହାମାନ୍ୟ ବୀରପୁରୁଷ ଲିଭିଂଷ୍ଟୋନ ଇହଧାମ ତ୍ୟାଗ କଲେ । ମେ ମାସ ପହିଲା ତାରିଖ ପ୍ରତ୍ୟୁଷରେ ଲୋକେ ଦେଖିଲେ ଯେ ବିଜୟୀ ଲିଭିଂଷ୍ଟୋନ୍ ଯାନୁପାତି ପ୍ରାର୍ଥନା କରୁଥିବା ଅବସ୍ଥାରେ ତାଙ୍କର ମୃତ୍ୟୁ ହୋଇଛି ।

ଲିଭିଂଷ୍ଟୋନ୍ ମରି ଯାଇଛନ୍ତି ସତ କିନ୍ତୁ ସେ ନିସ୍ୱାର୍ଥପର ସ୍ୱଭାବରେ ବିପଦକୁ ବରଣ କରି ସେହି ଅନାବିଷ୍କୃତ ସ୍ଥାନକୁ ଆବିଷ୍କୃତ କରି ଯାଇ ଅଛନ୍ତି, ସେଥିପାଇଁ ତାଙ୍କର ଯଶ ଓ ଗୌରବ କାଳ କାଳକୁ ରହିବ ।

---




ତୁମ୍ଭେମାନେ ଅବଶ୍ୟ ଦେଖି ନଥିବ, କିନ୍ତୁ ଶୁଣିଥିବା ପୂର୍ବେ ରାଜାମାନଙ୍କ ଉଆସରେ କୌଣସି ଉତ୍ସବ ହେଲେ ବହୁତ ଅର୍ଥ ବ୍ୟୟ କରାଯାଇ ରାଜବାଟିକୁ ଆଡ଼ମ୍ବର ସହିତ ସାଜସଜ୍ଜା କରାଯାଉଥିଲା ।

କୌଣସି ଏକ ଦିନେ ବେଲ୍‌ଜିୟମ ରାଜା ପୃଥିବୀର ଜଣେ ସୁନାମଧନ୍ୟ ବୈଜ୍ଞାନିକଙ୍କୁ ତାଙ୍କ ଉଆସକୁ ଆସିବାକୁ ନିମନ୍ତ୍ରଣ କରିଥିଲେ । ସେ ଟ୍ରେନରେ ଆସି ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିବେ ବୋଲି ଆଗରୁ ଖବର ପଠାଇ ଥାଆନ୍ତି । ସେଥିପାଇଁ ରାଜବାଟିଠାରୁ ଆରମ୍ଭ କରି ରାଜପଥ ଓ ରେଳଷ୍ଟେସନ ପର୍ଯ୍ୟନ୍ତ ଚତୁଃର୍ଦ୍ଦିଗରେ ସାଜସଜ୍ଜା ଚାଲିଲା । ରାଣୀ ଏହି ବିଖ୍ୟାତ ଅତିଥିଙ୍କୁ ଅଭ୍ୟର୍ଥନା କରିବା ପାଇଁ ପ୍ରସ୍ତୁତ ହୋଇ ଥାଆନ୍ତି । ରାଜବାଟିଠାରୁ ଷ୍ଟେସନ ପର୍ଯ୍ୟନ୍ତ ଏହି ପୂଜାସ୍ପଦ ବ୍ୟକ୍ତି ଜଣକୁ ଦେଖିବାପାଇଁ ରାଜ୍ୟର ଚାରିଆଡ଼େ ଲୋକାରଣ୍ୟ । ରେଳଷ୍ଟେସନରେ ଲୋକଙ୍କର ଏତେ ଭିଡ଼ ଯେ ସୋରିଷଟାଏ ବି ତଳେ ପକେଇବାକୁ ଜାଗା ନଥାଏ । ରାଜା ଓ ରାଣୀ ମଟରକାର୍ ଖଣ୍ଡିଏ ଷ୍ଟେସନକୁ ପଠାଇ ଥାଆନ୍ତି, ସେହି ମହାମାନ୍ୟ ଅତିଥିଙ୍କୁ ପାଛୋଟି ଆଣିବା ପାଇଁ।

ଆର୍ଡ଼ବେଲ ବାଜଗଲା ପରେ ଭପ୍‌ଭପ୍ ଧୂମ୍ରରାଶି ଉଦ୍‌ଗୀରଣ କରି ଗାଡ଼ି ଆସି ପ୍ଲାଟଫର୍ମରେ ଲାଗିଗଲା । ରୁଣ୍ଡ ହେବା ଲୋକେ ସ୍ବଷ୍ଟି ବସି ଥିଲେ ଆଗନ୍ତୁକ ସେହି ସ୍ୱନାମଧନ୍ୟ ଡ. ବିଖ୍ୟାତ ବ୍ୟକ୍ତିଙ୍କୁ ଦେଖିବା ଉଦ୍ଦେଶ୍ୟରେ । ଗାଡ଼ିରୁ କେତେ ଲୋକ ଓହ୍ଲାଇଲେ ଓ କେତେ ଲୋକ ବି ଚଢ଼ିଲେ । ସେତେବେଳେ ପ୍ଲାଟଫର୍ମଟି ଲୋକାରଣ୍ୟ ହୋଇଗଲା । ସେଠାରେ ରୁଣ୍ଡ ହୋଇଥିବା ହଜାର ହଜାର ଲୋକ ଯେତେ ଏପାଖ ସେପାଖ ହେଲେ ଟିକିଏ ତାଙ୍କର ଦର୍ଶନ ପାଇବାକୁ, ମାତ୍ର ସେ ଲୋକ କାହାନ୍ତି ? ଗଲେ ବା କୁଆଡ଼େ ? ବହୁତ ଅନ୍ୱେଷଣ ପରେ କେହି ତାଙ୍କୁ ସେଠାରେ ଖୋଜି ନପାରି ନିରାଶ ହୋଇ ଯେ ଯାହା ଘରକୁ ବାହୁଡ଼ି ଗଲେ ।

କିଛି ସମୟ ଅପେକ୍ଷା କରି ଶେଷରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ନ ପାଇ ମଠର କର୍ତ୍ତି ଚାଲିଲେ ରାଜାଙ୍କ ଉଆସ ଅଭିମୁଖରେ । ରାଣୀଙ୍କୁ ଜଣାଇ ଦିଆଗଲା ଯେ ସେ ଭଦ୍ରଲୋକ ଏଗାଡ଼ିରେ ଆସି ନାହାନ୍ତି । ଏ ସମ୍ବାଦ ପାଇ ରାଣୀ ବିଶେଷ ଦୁଃଖିତ ହେଲେ । ତାଙ୍କର ମନୋବଳ ଭାଙ୍ଗି ପଡ଼ିଲା । ରାଜା ଓ ରାଣୀ ଉଭୟେ କଥାବାର୍ତ୍ତା ହେଲେ ଯେ କୌଣସି ଅସୁବିଧା ବଶତଃ ସେ ଆସିବାକୁ ନିଶ୍ଚିତ ଭାବେ ଅକ୍ଷମ ହୋଇଛନ୍ତି ।

କିଛି ସମୟ ଅତିବାହିତ ହେବାପରେ ରାଜବାଟିର ଫାଟକ ପାଖରେ ଜଣେ ଲୋକ ଆସି ପହଞ୍ଚିଲେ । ସାଧାରଣ ଛିଣ୍ଡା ପୋଷାକ ପିନ୍ଧିଛନ୍ତି ଏବଂ ହାତରେ ତାଙ୍କର ଚମଡ଼ାର ବ୍ୟାଗ ଖଣ୍ଡିଏ । ଗେଟ୍‌ରେ ଥିବା ଦରୁଆନ୍ ତାଙ୍କୁ ଦେଖି ପଚାରିଲା, "ତୁମେ କିଏ ? ଏଠାକୁ କାହିଁକି ଆସିଛ ?" ଲୋକଟି ବିନମ୍ରର ସହିତ ଉତ୍ତର ଦେଲେ, "ମୁଁ ରାଣୀଙ୍କୁ ସାକ୍ଷାତ କରିବାକୁ ଆସିଛି ।"

ଦରୁଆନ୍ ଜଣକ ତାଙ୍କଠାରୁ ଆଉ ଅଧିକ କିଛି ପରିଚୟ ନବୁଝି ପୋଷାକ ପରିଚ୍ଛଦକୁ ଲକ୍ଷ୍ୟକରି ଗମ୍ଭୀର ସ୍ୱରରେ ଜବାବ

ଦେଲା, "ଆରେ ମୂର୍ଖ, ଅଭଦ୍ର, ତତେ କ'ଣ ଏତିକ ଜଣାନାହିଁ ? ଏଭଳି ପୋଷାକ ପିନ୍ଧି ଆସିଲେ କ'ଣ ରାଣୀଙ୍କୁ ସାକ୍ଷାତ କରି ପାରିବୁ ?"

"ତାଙ୍କ ନିକଟରେ ମୋର ଅତି ଜରୁରୀ କାର୍ଯ୍ୟ ଅଛି ।"

"ତୋର କି ଜରୁରୀ କାର୍ଯ୍ୟ ରାଣୀଙ୍କ ପାଖରେ ଅଛି କହିଲୁ ?"

ଆଗନ୍ତୁକ ବ୍ୟକ୍ତି ଜଣକ ବଡ଼ ଅସୁବିଧାରେ ପଡ଼ି ବାଧ୍ୟ ହୋଇ କହିଲେ, "ମୋତେ ଆସିବାପାଇଁ ରାଣୀ ନିମନ୍ତ୍ରଣ କରିଥିଲେ । ମୋର ନାମ ଆଇନ୍ ଷ୍ଟାଇନ ।"

ତାଙ୍କ ପାଟିରୁ ଯେମିତି ଦରୁଆନ୍ ଏତିକି ଶୁଣିଛି, ତାର ଆପାଦ ମସ୍ତକ ଥରିଲା । ସେ ଭାବି ଠିକ୍ କରି ପାରିଲା ନାହିଁ, କ'ଣ କରିବ ? ଯେଉଁ ବ୍ୟକ୍ତି ଲାଗି ଆଜି ଏତେ ଆୟୋଜନ, ତାଙ୍କୁ ପୁଣି ଦରୁଆନ୍ ଲୋକ ଏପରି ଭାବରେ ଗାଳି ଗୁଲଜ କରିଛି । ସେ ବିଶ୍ୱାସ କରିବ ବା କିପରି ? ଦରୁଆନ ତ ଅତି ଅଧସ୍ତନ କର୍ମଚାରୀ । ତାର ଭାବିବାର ଶକ୍ତି କେତେ ? ରାଜବାଟିର ଯଦି କୌଣସି ଉଚ୍ଚପଦସ୍ଥ କର୍ମଚାରୀ ହୋଇଥାଆନ୍ତେ ତାଙ୍କର ସେହି ପୁରପୁର ହୋଇ ଉଡ଼ୁଥିବା ବାଳ କେଶକ, କୋଚଟ ପୋଷାକ ଖଣ୍ଡିକ ଓ ଛିଣ୍ଡା ଚଟି ଯୋଡ଼ିକରୁ ମଧ୍ୟ ତାଙ୍କୁ ଚିହ୍ନି ପାରି ନଥାନ୍ତେ ।

କ'ଣ କରିବ, ବିଚରା ଦରୁଆନ ଲୋକ, ଯେତିକ ଭୁଲ କଲାଣି ତାର ଅବସ୍ଥା ବା କ'ଣ ହେବ କେଜାଣି ? ପୁଣି ଆଉ ବିଳମ୍ବ କରିବ କ'ଣ ? ସଙ୍ଗେ ସଙ୍ଗେ ଉଆସକୁ ଦୌଡ଼ି ଯାଇ ରାଣୀଙ୍କୁ ଖବର ଦେଲା । ରାଣୀ ଆସି ଦେଖିଲେ ସତକୁ ସତ ତାଙ୍କର ନିମନ୍ତ୍ରିତ ଅତିଥି ପୃଥିବୀ ପ୍ରସିଦ୍ଧ ସେହି ଆଇନ ଷ୍ଟାଇନ୍ ବ୍ୟାଗ୍ ଖଣ୍ଡେ ଧରି ଦଣ୍ଡାୟମାନ । ରାଣୀ ଷ୍ଟେସନ ପାଖକୁ ଗାଡ଼ି ଆଣିବାପାଇଁ ନ ଯାଇଥିବା ଦେଖି ନିଜେ ଲଜ୍ଜିତା ହେଲେ ଏବଂ ସହସ୍ମାନେ ତାଙ୍କୁ ରାଜପ୍ରାସାଦ ମଧ୍ୟକୁ ପାଛୋଟି ନେଇଗଲେ ।

ବିଶ୍ୱ ବିଖ୍ୟାତ ଏନ୍ଥ ଜ୍ଞାନ-ଦରିଦ୍ରବେଶୀ ବୈଜ୍ଞାନିକ ଆଇନ୍‌ଷ୍ଟାଇନ ୧୮୭୯ ମସିହା ମାର୍ଚ୍ଚ ୧୪ ତାରିଖରେ ଜର୍ମାନୀର ବାଭେରିଆ ରାଜ୍ୟରେ ଜନ୍ମ ହୋଇଥିଲେ । ସେ ସମୟରେ ଜର୍ମାନୀର ରାଜା ଉଇଲିୟମଙ୍କର ଅତି ପରାକ୍ରମୀ 'ବିସ୍‌ମାର୍କ' ପ୍ରଧାନମନ୍ତ୍ରୀ ଥିଲେ । ସେ ଏତେ ପ୍ରତିଭାଶାଳୀ ଓ ପ୍ରତାପୀ ମନ୍ତ୍ରୀ ଥିଲେ ଯେ ପୃଥିବୀର ସବୁ ଦେଶ ତାଙ୍କୁ ସମ୍ମାନ ଓ ଖାତିର କରୁଥିଲା । ବିସ୍‌ମାର୍କଙ୍କ ଚେଷ୍ଟାରେ ଜର୍ମାନୀର ଖଣ୍ଡ ବିଖଣ୍ଡ ହୋଇ ପଡ଼ିଥିବା ଛୋଟ ଛୋଟ ରାଜ୍ୟଗୁଡ଼ିକୁ ନେଇ ଏକ ବିଶାଳ ସାମ୍ରାଜ୍ୟ ଗଠନ ହୋଇ ପାରିଥିଲା ।

ଆଇନ୍‌ଷ୍ଟାଇନଙ୍କର ଜନ୍ମ ଏକ ଇହୁଦୀ ପରିବାରରେ । ତାଙ୍କର ବାଲ୍ୟ ଜୀବନ ଅତି ସୁଖମୟ ଥିଲା । ସେ ପିଲାଦିନେ ଖେଳପ୍ରିୟ ନଥିଲେ । ତାଙ୍କର କଥା କହିବା ବିଳମ୍ବ ହେବାରୁ ପିତାମାତା ଓ ଧାଇପଡ଼ଶା ସମସ୍ତେ ଆଶଙ୍କା କଲେ ଯେ ପୁଅ ତାଙ୍କର ଖଗା ହୋଇ ଯିବ । ମାତ୍ର ସେ ବିଳମ୍ବରେ କଥା କହିବାରୁ ତାଙ୍କର ସନ୍ଦେହ ଦୂର ହୋଇଥିଲା ।

ପିଲାଦିନରୁ ଆଇନ୍‌ଷ୍ଟାଇନ ବିଜ୍ଞାନ ପ୍ରତି କିପରି ଆକୃଷ୍ଟ ହୋଇଥିଲେ ତାହା କେତୋଟି ସାମାନ୍ୟ କଥାରୁ ଜଣା ପଡ଼ିଥିଲା, ଏକେତ ପିଲାଦିନରୁ ସେ ଭାରି ଦୁର୍ବଳ, ତାପରେ ତାଙ୍କୁ ଥରେ ଭୀଷଣ ଜ୍ୱର ଆକ୍ରମଣ କରିବା ହେତୁ ଅଧିକ ଦୁର୍ବଳ ହୋଇ ପଡ଼ିଲେ । ତାଙ୍କର ପିତାମାତା ପୁଅପାଇଁ ବିଶେଷ ବ୍ୟସ୍ତ ହୋଇ ପଡ଼ିଲେ । କ'ଣ କରିବେ କିଛି ଉପାୟ ସ୍ଥିର କରି ପାରିଲେ ନାହିଁ । ଶେଷରେ ସେ ଗୋଟିଏ ଦୋକାନରୁ ଦିଗନିର୍ଣ୍ଣୟ ଯନ୍ତ୍ରଟିଏ କିଣି ଆଣିଲେ । ସେ ଭାବିଲେ ଯେ ପୁଅଟି ତାଙ୍କର ଏ ଯନ୍ତ୍ରଟିକୁ ଦେଖିଲେ ମାତ୍ରେ ରୋଗର ଯନ୍ତ୍ରଣାକୁ ଭୁଲିଯିବ । ପ୍ରକୃତରେ ଆଇନ୍‌ଷ୍ଟାଇନ ଯନ୍ତ୍ରଟିକୁ ଧରି ବାରମ୍ବାର ସେ ଯନ୍ତ୍ରଟିକୁ ଏପାଖ ସେପାଖ ହଲେଇ, ହଲେଇ ଦେଖିଲେ ଯେ ସେଥିରେ ଥିବା କଣ୍ଟାଟି କେବଳ ଗୋଟିଏ ଦିଗକୁ ରହୁଛି । ଆଇନ୍‌ଷ୍ଟାଇନଙ୍କର ପିଲାମନ ତ ! ଏ ଯନ୍ତ୍ରଟି ଏପରି ହେବାର ଦେଖି ଅତି କୌତୁକ ହେଲେ ଏବଂ ବାପ ଓ ମାଆଙ୍କୁ ବାରମ୍ବାର ପ୍ରଶ୍ନ କଲେ ଯେ କଣ୍ଟାଟି କାହିଁକି

ଗୋଟିଏ ଦିଗକୁ ରହୁଛି ? ବାପା ଓ ମା ଉତ୍ତର ଦେଲେ ଯେ ତୁ ବଡ଼ ହୋଇଗଲେ ସେ ସମସ୍ତ ବିଷୟ ଜାଣି ପାରିବୁ । ଏଥିରେ ତାଙ୍କର ଜିଜ୍ଞାସା ପ୍ରବୃତ୍ତି ନିବୃତ୍ତି ପରିବର୍ତ୍ତେ ବରଂ ବୃଦ୍ଧି ପାଇଲା ।

ବାଳକ ଆଇନ୍‌ଷ୍ଟାଇନଙ୍କର ପିତା ଗୋଟିଏ ଶ୍ରେଷ୍ଠ ଧରଣର ବୈଦ୍ୟୁତିକ କାରଖାନା ବସାଇଥିଲେ । ଆଇନ୍‌ଷ୍ଟାଇନ ଯେତେବେଳେ ସେ କାରଖାନାକୁ ଯାଆନ୍ତି, ସେତେବେଳେ ମଧ୍ୟ କାରଖାନାର ବିଭିନ୍ନ କଳ ଓ ଯନ୍ତ୍ରପାତିର କାର୍ଯ୍ୟକୁ ସବୁବେଳେ ନିରୀକ୍ଷଣ କରି ବୁଝନ୍ତି । ସେହି ସାମାନ୍ୟ ଦୃଷ୍ଟାନ୍ତ ଦୁଇଟି ଉପରେ ଯେ ସେ ଭିତ୍ତିକରି ଶେଷରେ ଜଣେ ଶ୍ରେଷ୍ଠ ବୈଜ୍ଞାନିକ ରୂପେ ପୃଥିବୀରେ ପରିଚୟ ଦେଲେ ଏକଥା ନୁହେଁ । କିନ୍ତୁ ଏତିକି ମନେ ରଖିବା ଉଚିତ ଯେ ପିଲାଦିନରୁ ଏହି ସାମାନ୍ୟ ଦୁଇଟି ଜିନିଷ ନେଇ ବିଜ୍ଞାନଚର୍ଚ୍ଚା ପ୍ରତି ସେ ବିଶେଷ ଆକୃଷ୍ଟ ହୋଇଥିଲେ ।

ଯେତେବେଳେ ତାଙ୍କୁ ୯ ବର୍ଷ ବୟସ, ସେ ଅତି କଠିନ ଗଣିତ ପ୍ରଶ୍ନର ସମାଧାନ କରି ପାରୁଥିଲେ । ଅଧିକାଂଶ ସମୟରେ ସେ ନୀରବ ରହି କ'ଣ ଗୁଡ଼ାଏ ଚିନ୍ତା କରୁଥିବାର ଲକ୍ଷ୍ୟ କରି ଯାଉଥିଲା । କୌଣସି ପ୍ରଶ୍ନର ଉତ୍ତର ଦେବାକୁ ହେଲେ ତାହା ବହୁତ ବିଳମ୍ବ ଘଟୁଥିଲା । ସେଥିପାଇଁ ଲୋକେ ତାଙ୍କୁ ପ୍ରଥମେ 'ବୋକା' ବୋଲି ଧାରଣା କରୁଥିଲେ ।

ଆଇନ୍‌ଷ୍ଟାଇନ ତାପରେ ମ୍ୟୁନିକ୍ ସହରରେ ଗୋଟିଏ ଉଚ୍ଚ ବିଦ୍ୟାଳୟରେ ନାମ ଲେଖାଇ ପଢ଼ିଲେ । ସେଠାରେ ବିଭିନ୍ନ ବିଜ୍ଞାନ ପୁସ୍ତକମାନ ପଢ଼ି ବିଜ୍ଞାନପ୍ରତି ଯଥେଷ୍ଟ ଶ୍ରଦ୍ଧା ଓ ଆକୃଷ୍ଟ ହେବାର ଦେଖାଗଲା ।

ପ୍ରାୟ ଯେତେବେଳେ ତାଙ୍କୁ ୧୫ ବର୍ଷ ବୟସ, ସେ ମିଲାନ୍ ସହରକୁ ଯାଇ ସେଠାରେ ଛାତ୍ରାବାସରେ ରହି ପଢ଼ିଲେ । ଗଣିତ ଶାସ୍ତ୍ରରେ ଯିନା ସେ ପାରଙ୍ଗମ କିନ୍ତୁ ସାହିତ୍ୟରେ ଅତି ଦୁର୍ବଳ ଥିଲେ ।

ଜର୍ମାନୀ ଦେଶଂକୁ ଲାଗି ସୁଇଜରଲାଣ୍ଡ ବୋଲି ଗୋଟିଏ ଦେଶ ଅଛି । ଏହାର ଅନ୍ୟନାମ ହେଉଛି ଇଉରୋପର "ଖେଳପଡ଼ିଆ ।" ପ୍ରାୟ ୧୭ ବର୍ଷ ବେଳକୁ ଜୁରିଚ ସହରସ୍ଥ ପୋଲିଟେକ୍‌ନିକାଲ୍ ବିଦ୍ୟାଳୟରେ ଯାଇ ସେ ଶିକ୍ଷାଲାଭ କଲେ । ସେଠାରେ ପାଞ୍ଚବର୍ଷ ଅଧ୍ୟୟନ ପରେ ୧୯୦୧ ମସିହାରେ ସେ କୃତିତ୍ୱର ସହିତ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

ସୁଇଜରଲାଣ୍ଡର ଜଳବାୟୁ ସ୍ୱାସ୍ଥ୍ୟ ପକ୍ଷେ ଯେପରି ଅନୁକୂଳ, ବୈଜ୍ଞାନିକ ଚିନ୍ତାଧାରାର ବିକାଶ ମାର୍ଗରେ ମଧ୍ୟ ପ୍ରତିକୂଳ ନୁହେଁ । ଛାତ୍ର ଜୀବନର ପରିସମାପ୍ତି ପରେ ଆରମ୍ଭ ହେଲା ତାଙ୍କର କର୍ମମୟ ଜୀବନ । ଭାଗ୍ୟ କ୍ରମେ ପ୍ରଥମେ ସେ ବର୍ଣ୍ଣ ସହରରେ ଖଣ୍ଡିଏ କିରାଣୀ ଚାକିରୀରେ ନିଯୁକ୍ତି ପାଇଲେ । ଖୁବ୍ ଅଳ୍ପ ଦିନମଧ୍ୟରେ ତାଙ୍କର କାର୍ଯ୍ୟ-ଦକ୍ଷତା ତଥା ଆଚାର ବ୍ୟବହାରରେ ବିଭାଗୀୟ ଉପରସ୍ଥ କର୍ମଚାରୀ-ମାନେ ତାଙ୍କ ଉପରେ ଅତି ସନ୍ତୁଷ୍ଟ ହେଲେ ।

କିନ୍ତୁ ଆଇନ୍‌ଷ୍ଟାଇନ ଭାବିଲେ ଯଦି ସେ କିରାଣୀ ଚାକିରୀ କରୁଥାନ୍ତି ତେବେ ନିଶ୍ଚୟ ତାଙ୍କର ବୈଜ୍ଞାନିକ ଗବେଷଣାରେ ବାଧା ସୃଷ୍ଟି ହେବ । ତେଣୁ ଏହି ଚାକିରୀ ବନ୍ଧନରୁ ସେ କିପରି ମୁକ୍ତିଲାଭ ପାଇବେ ତାର ବାଟ ଖୋଜିଲେ ।

ଇତିମଧ୍ୟରେ ସେହି ବର୍ଣ୍ଣ ସହରରେ ଜନୈକ ଭଦ୍ରବ୍ୟକ୍ତିଙ୍କ କନ୍ୟାଙ୍କ ସହିତ ବିବାହ କରି ସେଠାରେ ରହିଲେ । ଏଠାରେ ତାଙ୍କର ଗବେଷଣା କାର୍ଯ୍ୟ ଆରମ୍ଭ ହେଲା । କଠୋର ଗବେଷଣା ମଧ୍ୟ ଦେଇ ସେ ଏକ ବୈଜ୍ଞାନିକ ତଥ୍ୟ ସିଦ୍ଧାନ୍ତରେ ଉପନୀତ ହେଲେ । ତାର ନାମ ହେଲା "ସାପେକ୍ଷତାର ସିଦ୍ଧାନ୍ତ ।" ମାନବ ସମାଜର କଲ୍ୟାଣ ସାଧନ ନିମନ୍ତେ ଏହି ନୂତନ ତଥ୍ୟର ଆବିଷ୍କାର ହେଲା । ସାରା ପୃଥିବୀର ବୈଜ୍ଞାନିକମାନେ ଯେତେବେଳେ ଜାଣିଲେ ଯେ ୨୬ ବର୍ଷର ଯୁବକଦ୍ୱାରା ଏଭଳି ଅଭିନବ ବିଜ୍ଞାନତଥ୍ୟର ଉଦ୍ଭାବନ ସମ୍ଭବ ହୋଇଛି ; ତେଣୁ ସେମାନେ ଆଶ୍ଚର୍ଯ୍ୟ ହେଲେ । ଆଇନ୍‌ଷ୍ଟାଇନଙ୍କ

ଉପରେ ଏବେ ସମସ୍ତ ବୈଜ୍ଞାନିକମାନଙ୍କର ନଜର ପଡ଼ିଲା ତାଙ୍କର ପ୍ରକାଶିତ ତଥ୍ୟଗୁଡ଼ିକୁ ପୃଥିବୀରେ ସାମାନ୍ୟ କେତେଜଣ ବୈଜ୍ଞାନିକ ବୁଝିବାକୁ ସକ୍ଷମ ହେଲେ ।

ପ୍ରତିଭା ବିକାଶହେଲେ ମନୁଷ୍ୟ ଅବିସ୍ମରଣୀୟ ହେବା ସ୍ୱାଭାବିକ । ଆଇନ୍‌ଷ୍ଟାଇନ ତାଙ୍କର ପ୍ରତିଭା ବଳରେ ସେହି ବର୍ଣ୍ଣ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ କାର୍ଯ୍ୟରେ ନିଯୁକ୍ତ ପାଇ ରହିଲେ । ତାଙ୍କର ନିରବଚ୍ଛିନ୍ନ ସାଧନାର ଫଳ ସ୍ୱରୂପ ସେ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ପାଇଲେ । ବିଭିନ୍ନ ବିଦ୍ୟାଳୟରେ ବିଜ୍ଞାନ ସମ୍ବନ୍ଧରେ ବକ୍ତୃତା ଦେବାକୁ ତାଙ୍କୁ ନିମନ୍ତ୍ରଣ ଆସିଲା । ପ୍ରେଗ୍ ବିଶ୍ୱବିଦ୍ୟାଳୟରେ ଛାତ୍ର ଏବଂ ଅଭିଭାବକଙ୍କଠାରୁ ସେ ଯେଉଁ ସୁନାମ ଅର୍ଜନ କଲେ ତାଙ୍କ ଜୀବନ କାଳମଧ୍ୟରେ ତାହା ଏକ ଉଲ୍ଲେଖଯୋଗ୍ୟ ବିଷୟ ।

୧୯୧୨ ମସିହାରେ ଜୁରିଚ୍ ପୋଲ ଟେକ୍‌ନିକାଲର ଅଧ୍ୟାପକ ଏବଂ ତାପରେ ବର୍ଲିନ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ବୃତ୍ତିଗୁ ଯଥାକ୍ରମେ ତାଙ୍କର ହୋଇଥିଲା ।

ଜର୍ମାନୀର ରାଜଧାନୀ ବର୍ଲିନ୍‌ଠାରେ "ପ୍ରସିୟାନ ଏକାଡେମୀ" ବୋଲି ଗୋଟିଏ ବିଜ୍ଞାନ ପରିଷଦ ଅଛି । ସେହି ପରିଷଦରେ ସତର ବର୍ଷକାଳ ଆଇନ୍‌ଷ୍ଟାଇନ ଜଣେ ବିଶିଷ୍ଟ ସଭ୍ୟରୂପେ ପରିଚିତ ।

୧୯୧୪ ମସିହାରେ ଯେତେବେଳେ ପୃଥିବୀରେ ଆରମ୍ଭ ହେଲା ପ୍ରଥମ ମହାସମର ସେତେବେଳେ କେତେକ ବୈଜ୍ଞାନିକ ଯୁଦ୍ଧପାଇଁ ଆଇନ୍‌ଷ୍ଟାଇନଙ୍କ ସ୍ୱାକ୍ଷର ନେବା ଉଦ୍ଦେଶ୍ୟରେ ଆସି ତାଙ୍କ ପାଖରେ ପହଞ୍ଚିଲେ । ଯୁଦ୍ଧ ସମ୍ବନ୍ଧରେ ଅଧିକ ଦୁରଦୃଷ୍ଟି ଥିବା ସତ୍ତ୍ୱେ ଆଇନ୍‌ଷ୍ଟାଇନ ସେଥିରେ ସ୍ୱାକ୍ଷର ଦେବାକୁ ଅନିଚ୍ଛୁକ ହେଲେ ।

ଜର୍ମାନୀ ପରାସ୍ତ ହେବା ସଙ୍ଗେ ସଙ୍ଗେ ଯୁଦ୍ଧ ଅବସାନ ହେଲା । ସେତେବେଳେ ଜର୍ମାନୀ ଆଉ ଫ୍ରାନ୍‌ସ ଏହି ଦୁଇଟି ଦେଶ ମଧ୍ୟରେ ଅନୁକୂଳ ସମ୍ବନ୍ଧ ଥାଏ । ବୈଜ୍ଞାନିକ ଆଇନ୍‌ଷ୍ଟାଇନ କୌଣସି ଦେଶ

ଛଥା ଜାତିର ନୁହଁନ୍ତି । ମାନବ ସମାଜର ସେବାକୁ ନିଜର କର୍ତ୍ତବ୍ୟ ବୋଲି ସ୍ଥିରକରି ଫ୍ରାନ୍ସ ରାଜ୍ୟକୁ ଯାଇ ସେଠାରେ ଗବେଷଣା ଚଳାଇଲେ ।

ମନୁଷ୍ୟର ପ୍ରକୃତ ବିକଶିତ ହେବା ବାଗରେ ପ୍ରଶଂସା ଉପରେ କେବେହେଲେ ପର୍ଯ୍ୟବସିତ ନୁହେଁ । ଆଇନଷ୍ଟାଇନ୍ ବହୁ ସମ୍ମାନର ଅଧିକାରୀ ହେଲେମଧ୍ୟ ସେ ନିଜର ଗବେଷଣା କର୍ତ୍ତବ୍ୟରେ ସବୁବେଳେ ବ୍ୟସ୍ତ ରହୁଥିଲେ ।

ଗୋଟିଏ ସାମାନ୍ୟ ଘଟଣାରୁ ଜାଣି ହେବ ଯେ ଆଇନଷ୍ଟାଇନ କିପରି ଜଣେ ଉଦାରମନା ଓ ସରଳ ବ୍ୟକ୍ତି ଥିଲେ । ବୈଜ୍ଞାନିକ ଆଇନଷ୍ଟାଇନଙ୍କ ସୁନାମ ସେତେବେଳକୁ ଚାରିଆଡ଼େ ବ୍ୟାପି-ଗଲାଣି ।

ପଡ଼ୋଶୀ ଗୃହର ଜଣେ ଭଦ୍ରଲୋକଙ୍କର ଗ୍ଲେଟ ଝିଅଟିଏ ଆଇନଷ୍ଟାଇନଙ୍କ ଘରକୁ ନିତି ଯିବା ଆସିବା କରେ । ଏହା ଦେଖି ଭଦ୍ରମହିଳା ଜଣଙ୍କ ମନରେ ସନ୍ଦେହ ଆଣି ଭାବିଲେ, ଝିଅ ମୋର ପ୍ରତିଦିନ ତାଙ୍କ ଘରକୁ ଯାଉଛି କାହିଁକି ? ତାର ସେଠି କାମ କ'ଣ ? ଦିନେ ଭଦ୍ରମହିଳା ଝିଅକୁ ଡାକି ପଚାରିଲେ, ମାଆରେ ! ତୁ ତାଙ୍କ ଘରକୁ ଏତେ ଯାଉଛୁ କାହିଁକି ? ସେଠାକୁ ଯାଇ ଏତେ ସମୟ ଯେ ରହୁଛୁ, ତାର କାରଣ କଣ ?

ଝିଅଟି ଖୁସି ହୋଇ କହିଲା, ମାଆ ତମେ ଜାଣନା କି ? ୧୧୨ ନମ୍ବର ଘରେ ଯେଉଁ ଭଦ୍ରଲୋକ ରହନ୍ତି, ସେ ଭାରି ଜ୍ଞାନୀ । ତାଙ୍କୁ ଲୋକେ ବୈଜ୍ଞାନିକ ବୋଲି କହୁଛନ୍ତି । ସେ ମଧ୍ୟ ଭଲ ଅଙ୍କ କଷି ଜାଣନ୍ତି । ମୁଁ ପାଠ ଅଙ୍କ ନବୁଝି ପାରିଲେ ତାଙ୍କ ନିକଟକୁ ଯାଇ ବୁଝି ଆସୁଛି । ସେ ବାବୁ ଏଡ଼େ ସୁନ୍ଦର ଲୋକ ଯେ ମୁଁ ପ୍ରତିଦିନ ଅଙ୍କ ବୁଝିବାକୁ ଗଲେ ସେ ବିରକ୍ତ ନହୋଇ ମୋତେ ଖୁସି ମନରେ ଅଙ୍କ ବୁଝାଇ ଦେଉଛନ୍ତି ।

ଏତିକ କଥା ଶୁଣି ଭଦ୍ରମହିଳା ଜଣକ ମନରୁ ସମସ୍ତ ସନ୍ଦେହ ଦୂର ହୋଇଗଲା । ସେ ବଡ଼ ଲଜ୍ଜିତ ହେଲେ ଏବଂ ବିଶ୍ୱବିଖ୍ୟାତ

ବୈଜ୍ଞାନିକ ଆଇନ୍‌ଷ୍ଟାଇନଙ୍କ ନିକଟକୁ ଯାଇ ସମସ୍ତ ବିଷୟ ଜଣାଇ କ୍ଷମା ମାଗିଲେ ।

ଉଦାରମନା ବ୍ୟକ୍ତି ବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ ଭଦ୍ରମହିଳାଙ୍କୁ ଉତ୍ତର ଦେଲେ, "ମା, ମୋର ଏଠାରେ କ୍ଷମା କରିବାର କ'ଣ ଅଛି ? ସେ ଝିଅଟି କ'ଣ ମୋର ନୁହେଁ ? ସେ ନିତ ମୋ ନିକଟକୁ ଆସେ ଗଣିତ ବୁଝିବା ଯାଇଁ । ବରଂ ମୁଁ ତାକୁ ବୁଝାଇ ଦେବା ଫଳରେ ମୋତେ ଭାରି ଆନନ୍ଦ ଲାଗୁଛି । ମୋର ତ ବାଳ ପାଚିଲାଣି, କିନ୍ତୁ ଜାଣିଲ ମା ସେ ଝିଅଠାରୁ ମୁଁ ପ୍ରତିଦିନ କେତେ କଥା ଶିଖୁଛି ।"

ବୈଜ୍ଞାନିକ ଆଇନ୍‌ଷ୍ଟାଇନଙ୍କ ଜୀବନରେ ଆଉ ଗୋଟିଏ ନୂଆ କଥା । ସେ ଜଣେ ଭଲ ବେହେଲା ବାଦକ ଥିଲେ । ବେହେଲା ତାଙ୍କର ଅନ୍ତରଙ୍ଗ ବନ୍ଧୁଭଳି କହିଲେ ଚଳେ । ଶେଷ ଜୀବନ ପର୍ଯ୍ୟନ୍ତ ସେ ବେହେଲା ବଜାଇବା ଛାଡ଼ି ନଥିଲେ । ଗଣିତ ଶାସ୍ତ୍ର ନୀରସକୁ ବେହେଲାର ମଧୁର ସ୍ୱର ଏକ ଆଶ୍ଚର୍ଯ୍ୟ ଧରଣର ସମନ୍ୱୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ତାଙ୍କ ନିକଟରେ ଏ ସମସ୍ତ ସମ୍ଭବ ହୋଇ ପାରିଥିଲା ।

ବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନଙ୍କର "ଫଟୋ ଇଲେକ୍‌ଟ୍ରିକ୍ ତଥ୍ୟ" ବିଜ୍ଞାନ ଜଗତକୁ ଏକ ଅବିସ୍ମରଣୀୟ ଦାନ । ଆଜିକାଲି ଦୂର ଦେଶରୁ ଅନ୍ୟ ଦେଶମାନଙ୍କୁ ରେଡ଼ିଓ ଦ୍ୱାରା ଯେଉଁ ଫଟୋ ପ୍ରେରଣ ହେଉଛି ଓ ଦୈନିକ ସମ୍ବାଦ ପତ୍ର ଗୁଡ଼ିକରେ ଦୂର ଦେଶରେ ଘଟିଥିବା ଯେଉଁ ଛବିଗୁଡ଼ିକ ପ୍ରକାଶ ପାଉଛି, ତାହା ସବୁ ଏହି ରେଡ଼ିଓ ବିଦ୍ୟୁତ ଶକ୍ତିର କରାମତି ।

ପୃଥିବୀର ଜଣେ ଶ୍ରେଷ୍ଠ ବୈଜ୍ଞାନିକ ହିସାବରେ ୧୯୨୧ ଖ୍ରୀଷ୍ଟାବ୍ଦରେ ଆଇନ୍‌ଷ୍ଟାଇନ୍‌ଙ୍କୁ ନୋବେଲ ପୁରସ୍କାର ମିଳିଲା ।

ମନୁଷ୍ୟର ସାଧନା କେବେ ହେଲେ ବିଫଳ ହେବାର ନୁହେଁ । ଆମେରିକାସ୍ଥିତ ପ୍ରିନ୍‌ଷ୍ଟନ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଅବସ୍ଥାରେ କେତେ ଜଣ ସହକର୍ମୀ ବୈଜ୍ଞାନିକଙ୍କ ସାହଚର୍ଯ୍ୟରେ ଯେଉଁ ନୂତନ

ତଥ୍ୟ ଜଗତକୁ ଦେଖାଇଲେ, ତାହା ହେଉଛି ଆଜିକାଲିର ପରମାଣୁ ଶକ୍ତିର ଆବିଷ୍କାର । ପରମାଣୁ ଶକ୍ତିର ଆବିଷ୍କାର ମୂଳରେ ଆଇନ୍‌ଷ୍ଟାଇନ୍‌ଙ୍କର ଦାନ ଅତୁଳନୀୟ, କିନ୍ତୁ ଆଇନ୍‌ଷ୍ଟାଇନ୍‌ଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯେ ଏହି ପରମାଣୁ ଶକ୍ତିକୁ କେବଳ ଜନହିତକର କାର୍ଯ୍ୟରେ ବିନିଯୋଗ କରାଯାଇ ପାରିବ ।

ତାଙ୍କର କର୍ମମୟ ଜୀବନ ଭିତରେ ସାରା ପୃଥିବୀରେ ଶାନ୍ତି ପ୍ରତିଷ୍ଠା ପାଇଁ "ଏକ ବିଶ୍ୱ ସରକାର" ଗଠନ କରିବାକୁ ପ୍ରୟାସୀ ଥିଲେ ।

ଆମର ଜାତିର ପିତା ସ୍ୱର୍ଗୀୟ ମହାତ୍ମାଗାନ୍ଧିଙ୍କୁ ଆଇନ୍‌ଷ୍ଟାଇନ୍ ଅନେକ ଶ୍ରଦ୍ଧା କରୁଥିଲେ । ତାଙ୍କର ଅହିଂସା ଆନ୍ଦୋଳନକୁ ଅତି ପ୍ରଶଂସା କରୁଥିଲେ । ଏପରିକି ନେହେରୁଙ୍କର ନେତୃତ୍ୱକୁ ଭାରି ପସନ୍ଦ କରୁଥିଲେ ଏବଂ ତାଙ୍କୁ ଯୁଗୋଚିତ ବ୍ୟକ୍ତି ବୋଲି କହୁଥିଲେ । ବୈଜ୍ଞାନିକ ଅପେକ୍ଷା ଦାର୍ଶନିକ ହିସାବରେ ମଧ୍ୟ ଆଇନ୍‌ଷ୍ଟାଇନ୍ ପୃଥିବୀରେ ଅତି ସୁପରିଚିତ ।

ନୋବେଲ ପୁରସ୍କାର ପ୍ରାପ୍ତି ପରେ ଆଇନ୍‌ଷ୍ଟାଇନ୍ ମାନବ ସମାଜରେ ଶ୍ରେଷ୍ଠ ବୈଜ୍ଞାନିକ ରୂପେ ସମ୍ମାନପ୍ରଦ । ତାଙ୍କର କର୍ମମୟ ଜୀବନ ଅତି କଠୋର ସାଧନା, ନିରାଡମ୍ବର ଏବଂ ନିରଳସ ଭାବରେ କଟିଥିଲା ।

ପ୍ରତିଭାବାନ ବ୍ୟକ୍ତି ଆଇନ୍‌ଷ୍ଟାଇନ୍ ୧୯୫୫ ମସିହାରେ ସାରା ପୃଥିବୀର ମାୟା ମମତା ଓ ଜଞ୍ଜାଳ ସବୁ କିଛି ତୁଟାଇ ଦେଇ ଚିର ନିଦ୍ରା ଗଲେ । ତାଙ୍କର ଏହି ଶୋକୋଚ୍ଛ୍ୱାସ ମୃତ୍ୟୁ ଖବରରେ ସାରା ପୃଥିବୀ ଅଭିଭୂତ ହେଲା । ସେ ମରିଗଲେ ସିନା କିନ୍ତୁ ଜଣେ ବିଶିଷ୍ଟ ଦାର୍ଶନିକ ତଥା ବୈଜ୍ଞାନିକ ହିସାବରେ ତାଙ୍କର ସ୍ଥାନ ପୃଥିବୀରେ ଅପୂରଣୀୟ ରହିଲା ଏଥିରେ ସନ୍ଦେହ ନାହିଁ ।

---




ମହାପୁରୁଷମାନଙ୍କର ଜୀବନୀ ନାନା ଅଲୌକିକ ଘଟଣାବଳୀରେ ପରିପୂର୍ଣ୍ଣ । ସଚ୍ଚରିତ୍ର, ଉଦାରମନା, କର୍ମଠତା ତଥା ଦେଶସେବା ପ୍ରଭୃତି କେତେକ ସଦ୍‌ଗୁଣଯୋଗୁ ଜଗତରେ ସେମାନେ ଖ୍ୟାତି ଅର୍ଜନ କରିବା ସମ୍ଭବପର ।

ଯେଉଁ ବ୍ୟକ୍ତି ଏକାଧାରରେ ଜଣେ ଗୃହସ୍ଥ, ସମ୍ପାଦକ, ପଣ୍ଡିତ ତଥା ଦାର୍ଶନିକରୂପେ ଦେଶରେ ଖ୍ୟାତି ଅର୍ଜ୍ଜନ କରି ପାରିଛନ୍ତି, ସେ ମହାନ୍ ବ୍ୟକ୍ତି ଆଜି ଦେଶବାସୀଙ୍କର ପୂଜ୍ୟ ଏବଂ ନମସ୍ୟ—ତାଙ୍କର ଅବଦାନ ଯେ ଜାତିପକ୍ଷେ ଏକ ଶ୍ରେଷ୍ଠ ସମ୍ବଳ ଏହା ମୁକ୍ତ କଣ୍ଠରେ ସମସ୍ତେ ସ୍ୱୀକାର କରିବେ ।

ସ୍ୱର୍ଗତଃ ବାଳଗଙ୍ଗାଧର ତିଳକ ଏହି ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ । ସେ ୧୮୫୬ ମସିହାରେ ମହାରାଷ୍ଟ୍ର ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ । ସ୍ୱର୍ଗୀୟ ତିଳକଙ୍କର ପ୍ରତିଭା କେବଳ ସେହି

ଦେଶଟି ମଧ୍ୟରେ ସୀମିତ ନଥିଲା ସାରା ପୃଥିବୀରେ ବ୍ୟାପିଥିଲା । ଏଣୁ ପୃଥିବୀର ପ୍ରାୟ ଅଧିକାଂଶ ଲୋକ ତାଙ୍କ ଆଦର୍ଶକୁ ମାନୁଥିଲେ ଓ ତଦନୁଯାୟୀ କାର୍ଯ୍ୟ କରୁଥିଲେ । ସେହି ମହାପୁରୁଷଙ୍କ ସତ୍ୟ, ଶାନ୍ତି ଓ ମୈତ୍ରୀର ବାଣୀ ସାରା ପୃଥିବୀରେ ବ୍ୟାପିଛି ।

ସେଥିପାଇଁ ଆମ ଦେଶ ତଥା ଦେଶର ବାହାରେ ମଧ୍ୟ ବାଳଗଙ୍ଗାଧର ତିଳକ ପରିବର୍ତ୍ତେ "ଲୋକମାନ୍ୟ ତିଳକ" ହିସାବରେ ସେ ସୁପରିଚିତ ।

ଲୋକମାନ୍ୟ ତିଳକ ମଧ୍ୟ ଜଣେ ବୀରପୁରୁଷ ହିସାବରେ ଗଣ୍ୟ ଅଟନ୍ତି । ସେ ବହୁଗୁଣୀ ପ୍ରତିଭାର ବ୍ୟକ୍ତି ଥିଲେ ।

ସବୁ ସମୟରେ ଆମେ ଦେଶବାସୀ ସମସ୍ତେ, ବର୍ତ୍ତମାନ ଓ ଭବିଷ୍ୟତ ସମସ୍ୟାଗୁଡ଼ିକର ଆଶୁ ସମାଧାନ ହେବାରେ ତାଙ୍କ ବ୍ୟକ୍ତିତ୍ୱର ଉପଦେଶଗୁଡ଼ିକୁ ଗ୍ରହଣ କରିଥାଉଁ । ଧୂପ ସଳିତା ଜଳିଯିବା ପରେ ତାର ସୁଗନ୍ଧ ଯେପରି କିଛି ସମୟ ପର୍ଯ୍ୟନ୍ତ ବାତାବରଣକୁ ସୁଗନ୍ଧିତ କରି ରଖେ, ସେହିପରି କୌଣସି ଏକ ମହତବ୍ୟକ୍ତିର ତିରୋଧାନ ପରେ ତାଙ୍କର ସେହି ପ୍ରତିଭା ମାନବ ସମାଜକୁ ତାର ପରବର୍ତ୍ତୀ ସମୟରେ ପ୍ରଭାବିତ କରିଥିବାର ଦେଖାଯାଏ । ସମାଜସେବୀ ସ୍ୱର୍ଗୀୟ ଲୋକମାନ୍ୟ ତିଳକଙ୍କର ବ୍ୟକ୍ତିତ୍ୱର ପରିଚୟ ଠିକ୍ ଏହି ଶ୍ରେଣୀର ଅନ୍ତର୍ଗତ । ଆହୁରି ମଧ୍ୟ ଅନେକ ମହାପୁରୁଷଙ୍କ ଜୀବନୀ ଆଲୋଚନା କଲେ ଜଣାପଡ଼େ ଯେ ଜୀବନକାଳ ବ୍ୟାପୀ ସେମାନଙ୍କର ଶ୍ରେଷ୍ଠତ୍ୱର ବିକାଶ ମାନବସମାଜ ଉପରେ ପ୍ରଭାବ ପକାଇ ନଥାଏ । ମାତ୍ର ତାଙ୍କର ତିରୋଭାବର ଅନେକ ଦିନ ପରେ ସେ ପ୍ରଭାବ ପୁଣି ପଡ଼ିବାର ଦେଖାଯାଏ ।

ଲୋକମାନ୍ୟ ତିଳକ ଯେ ପ୍ରତିଭାର ମୂର୍ତ୍ତି ରୂପେ ଦେଶବାସୀଙ୍କ ନିକଟରେ ପୂଜାର ପାତ୍ର ହୋଇଛନ୍ତି, ତାହା କେବଳ ସମ୍ଭବ ହୋଇଛି ତାଙ୍କର ଅସାଧାରଣ ବୀରତ୍ୱର ପରିଚୟ ଫଳରେ । ସାଧାରଣ ଦୃଷ୍ଟିକୋଣରୁ ଯଦି ଏହା ବିଚାର କରାଯାଏ, ତେବେ ଏଭଳି କେତେ

ଲୋକ ଅଛନ୍ତି ଯେ ସେମାନେ ଦେଶ ତଥା ଜାତିର ସେବାରେ ନିଜର ଜୀବନକୁ ଉତ୍ସର୍ଗ କରି ଦେଇଛନ୍ତି ।

ସ୍ୱର୍ଗୀୟ ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ,
ସ୍ୱାଧୀନତା ପଥେ ଅଛି ଯେତେ ଗାଡ଼
ମିଶୁ ପଡ଼ି ତହିଁ ମୋର ମାଂସ ହାଡ଼ ।"

ଉପର୍ଯ୍ୟୁକ୍ତ ଲେଖା ଲୋକମାନ୍ୟ ତିଳକଙ୍କ କର୍ମମୟ ଜୀବନ ଭିତରେ ପୂରାପୂରି ଖାପ ଖାଇଯାଏ । ସେ ଦେଶବାସୀଙ୍କର କଲ୍ୟାଣ ସାଧନ ନିମିତ୍ତ ଯେତେ ବାଧାବିଘ୍ନ ଆସୁ ପଛକେ, ସେ ସମସ୍ତ ଏଡ଼ି ଦେଇ ଦ୍ରୁତ ପଦେଇ ବଢ଼ିଅନ୍ତି ଆଗକୁ । ଦେଶପ୍ରେମ ତିଳକ ଦୃଢ଼ ସଙ୍କଳ୍ପର ସହିତ ନିର୍ଭୀକ ଭାବରେ ଆଗେଇ ଚାଲିଥିଲେ ଦେଶବାସୀଙ୍କର ସେବା କରିବାରେ । ବାସ୍ତବିକ ଏହି ଗୁଣଗୁଡ଼ିକ ପ୍ରକୃତରେ ମାନବ ଜୀବନର ଶ୍ରେଷ୍ଠତ୍ୱ ବିକାଶର ପରିଚୟ ଦେଇଥାଏ । ତାଙ୍କର ଅମାୟିକ ହୃଦୟର ପ୍ରତିଭା ଆଜି ଭାରତର କୋଟି କୋଟି ସାମାଜିକ ଜୀବନ ଉପରେ ପ୍ରଭାବ ପକାଇ ପାରିଛି ।

ଆମ ଦେଶ ବର୍ତ୍ତମାନ ସ୍ୱାଧୀନ । ଭାରତର ପ୍ରତ୍ୟେକ ନାଗରିକ ଆଜି ସ୍ୱାଧୀନତାର ଆସ୍ୱାଦନକୁ ଭୋଗ କରୁଥାଇଁ । ଇଂରେଜ ସରକାରକୁ ଏ ଦେଶରୁ ବିଦାୟ ଦେଇ ଦେଶକୁ ସ୍ୱାଧୀନ କରିବାର ଯେଉଁ ଶକ୍ତି ତାଙ୍କଠାରେ ନିହିତ ଥିଲା, ଭାରତର କେତେ ଲୋକଙ୍କଠାରେ ଏ ଶକ୍ତି ଦେଖାଯାଏ ? ଏହା କେବଳ ସମ୍ଭବ ହୋଇପାରିଛି ଦେଶ ପ୍ରାଣ ତିଳକ ଓ ଅନ୍ୟ କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କ ମୂଳଦୁଆ ଫଳରେ । ସେ ଅନେକ ସମୟରେ ମହାତ୍ମାଗାନ୍ଧିଙ୍କ ଭଳି, ବହୁ ନେତୃ-ସ୍ଥାନୀୟ ବ୍ୟକ୍ତିଙ୍କୁ ମଧ୍ୟ ଉପଦେଶ ଦେଇଥିଲେ । ଜାତିର ପିତା ମହାତ୍ମାଗାନ୍ଧି ତିଳକଙ୍କ ବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ତାଙ୍କର ଦୂରଦୃଷ୍ଟି ଥିଲା ଅପରିସମାପ୍ତ । ଆଗକୁ କ'ଣ ଘଟଣା ଘଟିବ

ସେ ବିଷୟରେ ସେ ଚିନ୍ତା କରି କଷ୍ଟ ଦେଉଥିଲେ । ଏଠାରେ ସ୍ମରଣ କରାଯାଇ ପାରେ ଯେ ସ୍ୱାଧୀନତା ସଂଗ୍ରାମବେଳେ ପୂର୍ବ ଏସିଆ ଓ ଆଫ୍ରିକାର ଲୋକେ ବିଶେଷତଃ ଲୋକମାନ୍ୟ ତିଳକଙ୍କର ଭୂମିକାକୁ ସାଦରେ ଗ୍ରହଣ କରି ସେଥିରେ ପ୍ରଭାବିତ ହୋଇଥିଲେ ।

ଲୋକମାନ୍ୟ ତିଳକଙ୍କର ଯୁଗାନ୍ତକାରୀ ସିଦ୍ଧାନ୍ତ ବଳରେ ଯେଉଁ ଭାବଧାରା ଅନୁସୃତ ହୋଇଥିଲା, ତାହା ଦେଶର ସୀମାରେଖା ଭିତ ସୀମାବଦ୍ଧ ହୋଇ ନଥିଲା । ତାଙ୍କର ଉଦାର ଚିନ୍ତା, ସ୍ଥିର ପ୍ରତିଜ୍ଞା ଯେ କୌଣସି ଆତ୍ମମର୍ଯ୍ୟାଦାସମ୍ପନ୍ନ ସମାଜ ପକ୍ଷେ ଆଲୋକପାତ କରି-ପାରିବ ଏଥିରେ ସନ୍ଦେହ ନାହିଁ ।

ସ୍ୱାଧୀନତା ତାଙ୍କର ଜନ୍ମଗତ ଦାବୀ ବୋଲି ସେ ଘୋଷଣା କରି-ଥିଲେ । ମାତ୍ର ଦେଶ ସ୍ୱାଧୀନ ହେବାର କୌଣସି ଅବସର ନ ପାଇଥିଲେ ମଧ୍ୟ ସେ ତାଙ୍କର ପ୍ରତି ମୁହୂର୍ତ୍ତକୁ ସ୍ୱାଧୀନତା ହାସଲ ଉଦ୍ଦେଶ୍ୟରେ ବିନିଯୋଗ କରୁଥିଲେ ।

ତିଳକଙ୍କର ଜୀବନ କାଳ ମଧ୍ୟରେ ସାମୟିକ ବିପର୍ଯ୍ୟୟ ଏବଂ ବହୁ ଘାତ ପ୍ରତିଘାତ ଆସିଥିଲେ ହେଁ ଜନସାଧାରଣଙ୍କ ତରଫରୁ ତାଙ୍କର କାର୍ଯ୍ୟକଳାପ ଖୁବ୍ ଉଚ୍ଚ କୋଟିର ବୋଲି ଜାଣି ସେ ପରମ ସନ୍ତୋଷ ଲାଭ କରିଥିଲେ ।

ବ୍ୟକ୍ତିଗତ ଜୀବନ ଭିତରେ ତାଙ୍କୁ ବହୁ ନିର୍ଯ୍ୟାତନା ଓ କଠୋରତା ସହିବାକୁ ପଡ଼ିଥିଲା । ମନେ ହୁଏ ଅନ୍ୟ କୌଣସି ବ୍ୟକ୍ତି ପକ୍ଷରେ ତାହା ସମ୍ଭବ ହୋଇ ପାରି ନଥାନ୍ତା । ମାତ୍ର ଏଥିପାଇଁ ତିଳକ ତାଙ୍କର ଅନ୍ତର୍ନିହିତ ସଦ୍‌ଗୁଣଗୁଡ଼ିକୁ ସେ ହରାଇ ଦେଇ ନ ଥିଲେ । ଏହା ଅବଶ୍ୟ ପ୍ରତ୍ୟେକ ବ୍ୟକ୍ତିର ପ୍ରଣିଧାନର ବିଷୟ । ଲୋକମାନ୍ୟ ତିଳକଙ୍କର ନିରଳସତା, କର୍ମଠତା, ତଥା ନିର୍ଭୀକପଣିଆ ଯେ କେତେ ଦୂର ଥିଲା ତାହା ନିମ୍ନଲିଖିତ ବିଷୟରୁ ଜଣା ପଡ଼େ ।

ଲୋକମାନ୍ୟ ତିଳକଙ୍କୁ ଯେତେବେଳେ ଜେଲକୁ ନିଆଯାଇଥିଲା, ତାଙ୍କର ଅତି ପ୍ରିୟ ୫୫ ଖଣ୍ଡି ବହି, ଆବଶ୍ୟକୀୟ ବସ୍ତୁ, କେତେ ଖଣ୍ଡ

ସେଟି ଓ ସାମାନ୍ୟ ୪ଟି ଟଙ୍କା ତାଙ୍କ ସଙ୍ଗରେ ଥିଲା । ଜେଲକୁ ଯିବାଠାରୁ ଫେରିବା ପର୍ଯ୍ୟନ୍ତ ବହିର୍ଜଗତ ସହିତ ତାଙ୍କର ସମ୍ପର୍କ ଆଦୌ ନଥିଲା । ସେ ସବୁବେଳ ପାଇଁ ଜେଲରେ ବିଦ୍ୟାଧ୍ୟୟନରେ ମଗ୍ନ ରହୁଥିଲେ । ତିଳକ ଅନାସକ୍ତ ଭାବରେ ଅନେକ ଗୁଡ଼ିଏ ଗ୍ରନ୍ଥ ଅଧ୍ୟୟନ କରି "ଗୀତା ରହସ୍ୟ" ବୋଲି ଖଣ୍ଡିଏ ମୂଲ୍ୟବାନ ଗ୍ରନ୍ଥ ପ୍ରଣୟନ କରିବାକୁ ସକ୍ଷମ ହୋଇ ପାରିଥିଲେ ।

ତାଙ୍କର ଦୃଢ଼ ଓ ଆତ୍ମବିଶ୍ୱାସ ଯେ କେତେ ଥିଲା, ତାହା ନିମ୍ନଲିଖିତ କେତୋଟି ପଂକ୍ତିରୁ ସହଜରେ ଜାଣି ହେବ । କେତେକ ବ୍ୟକ୍ତିଙ୍କଠାରୁ ପ୍ରକାଶ ଯେ ତିଳକ ଯେତେବେଳେ ଜେଲରୁ ଫେରିଲେ ସେତେବେଳେ ତାଙ୍କର ଏହି "ଗୀତା ରହସ୍ୟ" ଗ୍ରନ୍ଥଟି ଲେଖା ସରିଯାଇ ଥାଏ, ଏବଂ ତାହା ସରକାରୀ ଅନୁମୋଦନ କ୍ରମେ ପ୍ରକାଶ ହେବାର କଥା ଥିଲା । ତାଙ୍କର କେତେକ ହିତାକାଂକ୍ଷୀ ବନ୍ଧୁ ତିଳକଙ୍କୁ ପ୍ରଶ୍ନ କରିଥିଲେ ଯେ ଯଦି ସରକାର ଏ ଲେଖାକୁ ପ୍ରକାଶ କରିବାକୁ ନ ଦିଅନ୍ତି ତେବେ ଆପଣ କଣ କରିବେ ? ତିଳକ ହଠାତ୍ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଥିଲେ, ସରକାର ସିନା ମୋ ଲେଖାକୁ ନେଇ ଯାଇଛନ୍ତି ମୋ ମନକୁ ତ ନେଇଯାଇ ପାରି ନାହାନ୍ତି ? ମୁଁ ପୁଣି ଆଉ ଥରେ ଏ ଗ୍ରନ୍ଥଟି ଇଚ୍ଛା କଲେ ଲେଖି ଦେଇ ପାରିବି । ଏଭଳି ନିର୍ଭୀକ ଜବାବ ମିଳିବା କେତେ ଜଣଙ୍କଠାରୁ ଆଶା କରାଯାଏ ?

ଲୋକମାନ୍ୟ ତିଳକଙ୍କର ଗଭୀର ଆତ୍ମବିଶ୍ୱାସର ଅନ୍ୟ ଏକ ଜ୍ୱଳନ୍ତ ଉଦାହରଣ ହେଉଛି, ଚିରୋଲ ମୋକଦ୍ଦମାରେ ତାଙ୍କର ଡିସ୍‌ମିସ୍ ହେଲା । ଲୋକେ କୁହା କୁହି ହେଲେ ଯେ ତିଳକ ଏ ମୋକଦ୍ଦମାରେ ହାରିଯିବା ହେତୁ ଭାଙ୍ଗି ପଡ଼ିବେ । ତାଙ୍କ ମନୋବଳ ଏଇଥର ହଜି ଯାଇଛି । ଏ କଥାର ଉତ୍ତର ଦେବାକୁ ଯାଇ ସେ ବନ୍ଧୁଙ୍କ ନିକଟକୁ ଲେଖିଥିଲେ ଚିରୋଲ ମୋକଦ୍ଦମାରେ ଅନିଶ୍ଚିତ ପରାଜୟ ଉପରେ ମୁଁ ତ କେବେହେଲେ ଏ ପର୍ଯ୍ୟନ୍ତ ଗୁରୁତ୍ୱ ଦେଇନି । ଯେଉଁ କୁପ୍ରାରଟନା ବାହାରେ ହେଉଛି ତାହା ମୋଟାମୋଟି ଭିତ୍ତିହୀନ । ମୋର ବର୍ତ୍ତମାନ ବୟସ ଯେତେ ଆଜି ମଧ୍ୟ ମୋର ମନୋବଳ ସେତେ

ବରଂ ମୁଁ ଏହା ଦମ୍ଭର ଜୋର ଦେଇ କହିପାରେ ଯେ ଆକାଶ ଛିଣ୍ଡି ପଡ଼ିଲେ ମଧ୍ୟ ମୁଁ ଅଚଳ ଓ ଅଟଳ ରହି କର୍ମକ୍ଷେତ୍ରରେ ତାକୁ ବ୍ୟବହାର ଉଦ୍ଦେଶ୍ୟରେ ଲଗାଇବା ପାଇଁ ପ୍ରସ୍ତୁତ ରହିଛି । ତିଳକଙ୍କର ଏଭଳି ଅକାଟ୍ୟ ଉକ୍ତି ଓ ଉପଦେଶମୂଳକ ବାକ୍ୟ ଯେ କୌଣସି ବିପଦଗ୍ରସ୍ତ ଜାତିର କର୍ଣ୍ଣଧାର ପକ୍ଷେ ଏହା ଯେ ଅନୁକରଣଯୋଗ୍ୟ ଏଥିରେ ସନ୍ଦେହ ନାହିଁ ।

ଜାତିର ଜୀବନକୁ ଉନ୍ନତ ଓ ସମୃଦ୍ଧ କରିବାହିଁ ତିଳକଙ୍କର ଏକ ମାତ୍ର ଲକ୍ଷ୍ୟ ଥିଲା । ସେହି ମହାନ୍ ବ୍ୟକ୍ତିଙ୍କର ମୌଳିକ ଚିନ୍ତା ଓ ପ୍ରେରଣା ନିଶ୍ଚୟ ଆମ୍ଭମାନଙ୍କୁ ସର୍ବଦା ପ୍ରଭାବିତ କରୁଥିବ ଏଥିରେ କୌଣସି ଖଣ୍ଡିବାର ନାହିଁ । ସ୍ୱାଧୀନତା ପାଇବା ଠାରୁ ବହୁ ବର୍ଷ ବିତିଯାଇ ଥିଲେ ମଧ୍ୟ ଜାତୀୟ ସଂହତିର ସମ୍ପୂର୍ଣ୍ଣ ରୂପେ ଗଠନ ଓ ବିକାଶ ଦିଗରେ ବହୁ ପଛରେ ଆମେ ପଡ଼ିଛୁ ।

ଆମର ଦେଶବାସୀ ନୂତନ ଜୀବନ ପଥରେ ଅଗ୍ରସର ହେଉଥିବା ବେଳେ ମହାମାନ୍ୟ ତିଳକ ପ୍ରଭୃତି ଅନ୍ୟ ନେତାମାନଙ୍କ କଥା ମନରେ ପକାଇ ଜାତୀୟ ଏକତାର ଅଭିବୃଦ୍ଧି ନିମନ୍ତେ ସଦାସର୍ବଦା ଚେଷ୍ଟା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

ତା ଛଡ଼ା ଦେଶପ୍ରାଣ ଲୋକମାନ୍ୟ ତିଳକଙ୍କର ଆତ୍ମୋତ୍ସର୍ଗର ଯେଉଁ ଆଦର୍ଶ ଏବଂ ପରାକାଷ୍ଠା ପ୍ରତ୍ୟେକ ମୁହୂର୍ତ୍ତ ପାଇଁ ତାଙ୍କ ଜୀବନକୁ ପ୍ରଭାବିତ କରିଥିଲା, ସେହି ପ୍ରେରଣାକୁ ମୂଳ ମନ୍ତ୍ର ରୂପେ ଗ୍ରହଣ କରି ଆମ୍ଭେମାନେ ପ୍ରତ୍ୟେକ କାର୍ଯ୍ୟ କରିବା ଉଚିତ ।

ତିଳକଙ୍କର ଜୀବନ ବହୁ କଠୋରତା ଓ ସାମୟିକ ବିପର୍ଯ୍ୟୟ ଦେଇ ଗତିକରି ଥିଲେହେଁ ଶେଷ ପର୍ଯ୍ୟନ୍ତ ଚରମ ସଫଳତାର ଗୌରବରୁ ସେ ବଞ୍ଚିତ ରହିଥିଲେ । ବାସ୍ତବିକ ଏହା ବଡ଼ ପରିତାପର ବିଷୟ । ତିଳକ ଜୀବନଭରି ଦୁଃଖ କଷ୍ଟ, କାରାବରଣ ଓ ନିର୍ଯ୍ୟାତନା ଭୋଗ କରିବାରେ ଯେ ପ୍ରଥମ ବ୍ୟକ୍ତି ଥିଲେ ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଲୋକମାନ୍ୟ ତିଳକ ଯେ ଆମର ଉନ୍ନତି ଓ ପ୍ରେରଣାର ଆଦର୍ଶ ଏବଂ ଐତିହାସିକ ପରମ୍ପରାର ଅଂଶ ବିଶେଷ ଏ ଚେତନା ଆମର ହୃଦୟରେ ସର୍ବଦା ଜାଗ୍ରତ ରହିବା ଉଚିତ । ସେ ମହାନ ବ୍ୟକ୍ତି ଆମକୁ ତାଙ୍କର ଯେଉଁ ସତ୍‌ଶିକ୍ଷା, ସତ୍‌ବାଣୀ ଏବଂ ମାର୍ଗ ଦର୍ଶନ ଦେଇ ଯାଇଛନ୍ତି ସେଥିରେ ଆମେ ସବୁ କ୍ଷେତ୍ରରେ ନିଶ୍ଚୟ ଉପଯୁକ୍ତ ହୋଇପାରିବା ଏହାହିଁ ତାଙ୍କ ଜୀବନର ଏକ ତାତ୍ପର୍ଯ୍ୟ ।

ଯୁଗସ୍ରଷ୍ଟା ତିଳକ ଆଜି ଏ ଇହଜଗତରେ ନାହାନ୍ତି ସତ କିନ୍ତୁ ତାଙ୍କର ପ୍ରେରଣା ବଳରେ ଆମେ ଯେ ଆଜି ସ୍ୱାଧୀନତାର ଆସ୍ୱାଦନ ଭୋଗ କରୁଥାଇଁ ଏକଥା ସମସ୍ତେ ଏକସ୍ୱରରେ କହିବେ ।

---




ଯେଉଁମାନେ ଅସାଧାରଣ ପ୍ରତିଭା ବଳରେ ବିଜ୍ଞାନ ଭଣ୍ଡାରର ସମୃଦ୍ଧି ସାଧନ କରିବା ସଙ୍ଗେ ସଙ୍ଗେ ସାରା ପୃଥିବୀରେ ଖ୍ୟାତିଅର୍ଜ୍ଜନ କରିଛନ୍ତି ସେମାନଙ୍କ ମଧ୍ୟରେ ମେରି କ୍ୟୁରି ଅଗ୍ରଗଣ୍ୟା । ଜଣେ କୋମଳାଙ୍ଗୀ ନାରୀ କଠୋର ଅଧ୍ୟବସାୟ ଓ ଗବେଷଣା ମଧ୍ୟରେ ପ୍ରବୃତ୍ତ ରହି ଜଗତକୁ ଏକ ନୂତନ ଆଲୋକପ୍ରଦାନ କରିବା ତାଙ୍କ ପକ୍ଷେ ଏହା କ'ଣ ଗୌରବର ବିଷୟ ନୁହେଁ କି ? ଏହି ମହୀୟସୀ ମହିଳା ଜଣକ ପିଏର କ୍ୟୁରିଙ୍କର ପତ୍ନୀ ଥିଲେ । ସେ ପୃଥିବୀର କୋଟି କୋଟି ବୈଜ୍ଞାନିକମାନଙ୍କର ପଥପ୍ରଦର୍ଶିକା, ଏବଂ ଅଗଣିତ ଉତ୍କଟ ରୋଗଗ୍ରସ୍ତ ଆବାଳ-ବୃଦ୍ଧ-ବନିତାଙ୍କର ସ୍ନେହମୟୀ ଜନନୀ ସେ । ସାରା ପୃଥିବୀର ସେ ହୋଇଛନ୍ତି ପୂଜ୍ୟା ଏବଂ ନମସ୍ୟା ।

ଯେଉଁ କ୍ୟୁରି ରୁଟି ଖଣ୍ଡେ ଖାଇ ପାଣି ଢେକେ ପିଇ ଉପାସ ଭୋକ ସହି କଠିନ ପରିଶ୍ରମ କରିଥିଲେ ତାର କ'ଣ ପୁରସ୍କାର ନାହିଁ ?

ନିଃସ୍ପୃହ ପଟୁ । ପିଲାବେଳେ କ୍ୟୁରୀଙ୍କର ବୁଦ୍ଧି ବିବେକ ଓ ଚରିତ୍ର ଦେଖି ସମସ୍ତେ ତାଙ୍କୁ ପ୍ରଶଂସା କରି କହନ୍ତି, ଏ ପିଲା ଭବିଷ୍ୟତରେ ଦିନେ ଦେଶରେ ଗଣି ହେବ । ସତକୁ ସତ ମେରି କ୍ୟୁରୀ ଶେଷରେ ବିଜ୍ଞାନ ଜଗତର ଗଣି ହୋଇ ପାରିଥିଲେ ।

୧୯୨୩ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ସରକାର "କ୍ୟୁରୀ ଫାଉଣ୍ଡେସନ" ନାମରେ ଗୋଟିଏ ରେଡ଼ିୟମ୍ ପ୍ରତିଷ୍ଠାନ ପାଇଁ ୪୦ ହଜାର ଫ୍ରାଙ୍କର ଭତ୍ତା ବ୍ୟବସ୍ଥା କରିଥିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ଦୁଃସାଧ୍ୟ ରୋଗ ତାଙ୍କୁ ଆକ୍ରମଣ କଲା । ବଡ଼ ବଡ଼ ଡାକ୍ତରମାନେ ଜ୍ୱର, ଯକ୍ଷ୍ମା ଓ ରକ୍ତହୀନତା ରୋଗ ବୋଲି ମତ ଦେଲେ, କିନ୍ତୁ ପ୍ରକୃତରେ ତାହା ନୁହେଁ । ରେଡ଼ିୟମର ଅତ୍ୟଧିକ ତେଜସ୍କ୍ରିୟ ବିଷ ସଞ୍ଚାର ଯୋଗୁ ତାଙ୍କର ପ୍ରଧାନ ଇନ୍ଦ୍ରିୟମାନଙ୍କର କ୍ଷତି ଘଟିଥିଲା ।

ସଂସାରରେ ସାଧାରଣତଃ ପୁରୁଷ ଲୋକଙ୍କ ଅପେକ୍ଷା ସ୍ତ୍ରୀ ଲୋକମାନେ ଅଧିକ ଖ୍ୟାତି ଅର୍ଜନ କରିବା ଦେଖାଯାଏ । ମାତ୍ର ସ୍ତ୍ରୀ ଲୋକ ଯେ ସାଧାରଣତଃ ପୁରୁଷମାନଙ୍କ ଅପେକ୍ଷା ଅଧିକ ଖ୍ୟାତି ଅର୍ଜନ କରିବା ଜଗତରେ ଖୁବ୍ ବିରଳ । ଏ ବିଷୟ ନେଇ ମ୍ୟାଡ଼ାମ୍ କ୍ୟୁରୀଙ୍କ ଜୀବନ ଆଲୋଚନା କଲେ ତାହା ପରିଷ୍କାର ଅନୁଭୂତ ହୁଏ । ଦୁଃଖ-ଦୁର୍ଦ୍ଦଶା ଭିତରେ ଦେଇ ସେ ନାରୀସମାଜର ନେତା ରୂପେ କିପରି ପ୍ରଶଂସା ଭାଜନ ହୋଇ ପାରିଥିଲେ ତାହା ସଂକ୍ଷେପରେ ଏଠାରେ କୁହାଯାଉଛି ।

ପୋଲାଣ୍ଡ ଦେଶର ୱାରସ ସହରରେ ୧୮୬୭ ମସିହା ନଭେମ୍ବର ୭ ତାରିଖରେ ମ୍ୟାଡ଼ାମ୍ କ୍ୟୁରୀ ଗୋଟିଏ ଗରିବ ଘରେ ଜନ୍ମ ହୋଇଥିଲେ । ତାଙ୍କର ବାପା ବ୍ଲାଡିସ୍ଲାଭ ସକ୍ଲୋଡୋସ୍କି ହାଇସ୍କୁଲର ଜଣେ ସାଧାରଣ ଶିକ୍ଷକ । ମାଆ ମଧ୍ୟ ଜଣେ ଉଚ୍ଚ ଶିକ୍ଷିତା ନାରୀ । ବାପ ମାଆଙ୍କର କ୍ୟୁରୀଙ୍କୁ ଲଗାଇ ପୁଅ ଝିଅ ଚୋଟି ପାଞ୍ଚୋଟି । ପିଲାବେଳେ କ୍ୟୁରୀଙ୍କୁ ବାପ ମାଆ ସ୍ନେହରେ ମାନିଆଁ ଓ ମେରୀ ବୋଲି ମଧ୍ୟ ଡାକୁଥିଲେ । ମେରୀ ଦିନିଥିବା ଅବସ୍ଥାରେ ତାଙ୍କର ମାଆଙ୍କୁ ଯକ୍ଷ୍ମାରୋଗ

ଆକ୍ରମଣ କରିବା ଫଳରେ ଘର ଭଉଣୀଙ୍କ ଦ୍ୱାରା ସେ ଲାଳିତପାଳିତ ହୋଇଥିଲେ । ସବୁ ଭାଇଭଉଣୀଙ୍କର କ୍ୟୁରୀଙ୍କ ପ୍ରତି ଅତି ଶ୍ରଦ୍ଧା ଓ ମମତା ଥିଲା ।

ପିଲାଦିନେ କ୍ୟୁରୀ ସାଙ୍ଗସାଥୀଙ୍କ ସହିତ ରାସ୍ତାରେ ଖେଳୁଥିବା-ବେଳେ ବୃଦ୍ଧଟିଏ ଆସି ତାଙ୍କୁ ଦେଖି କହିଥିଲା ଯେ ଏ ଝିଅଟି ଭବିଷ୍ୟତରେ ନିଶ୍ଚୟ ଏ ଦେଶର ରାଣୀ ହେବ । ସବୁ ପିଲାମାନେ ଏହା ଶୁଣି ଆନନ୍ଦରେ ନାଚଉଠି କହିଲେ ଆମ ମାନିଆଁ ରାଣୀ ହେବରେ ରାଣୀ ହେବ ।

ପିଲାଦିନେ କ୍ୟୁରୀ ଅତି ଚଳଚଞ୍ଚଳା ଓ ବୁଦ୍ଧିମତୀ ଥିଲେ । ଘର ଭଉଣୀଙ୍କ ପଢ଼ିବା ପାଖରେ ସେ ସବୁ ପାଠ ଶୁଣି ଶୁଣି ମନେରଖି ପାରୁଥିଲେ । କ୍ୟୁରୀଙ୍କ ପରି ମେଧାବୀ ଅନ୍ୟ ଭାଇଭଉଣୀ କେହି ନୁହନ୍ତି । ସୁତରାଂ ଅତି ସ୍ୱଳ୍ପ ସମୟ ମଧ୍ୟରେ ୧୮୮୩ ମସିହା ଜୁନମାସ ବେଳକୁ ତାଙ୍କର ବାଲ୍ୟଶିକ୍ଷା ସମାପ୍ତ ହେଲା । ଅତି ଗୌରବର ବିଷୟ ସେ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ସୁନାର ପଦକ ପାଇଲେ ।

କ୍ୟୁରୀଙ୍କର ପ୍ରବଳ ଇଚ୍ଛା ଥିଲା କଲେଜରେ ପଢ଼ିବାକୁ । କିନ୍ତୁ ବାପାଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ଥିବା ହେତୁ ପଢ଼ାପଢ଼ିରେ ପ୍ରଥମେ ବ୍ୟାଘାତ ଘଟିଲା । ବଡ଼ ଭଉଣୀର ପଢ଼ିବାଟା ଆଗ ହେବ ଚାହିଁ ପଢ଼ିବା ବନ୍ଦ କରି କ୍ୟୁରୀ ରୋଜଗାର କରି ସାହାଯ୍ୟ ଦେବାକୁ ରାଜି ହେଲେ ଏବଂ ଟଙ୍କା ମଧ୍ୟ ଯୋଗାଇଲେ । ସେଥିରେ ତାଙ୍କ ବଡ଼ଭଉଣୀ ଡାକ୍ତରୀ ପଢ଼ି ପାରିଲେ ।

ଡାକ୍ତରୀ ପଢ଼ିସାରିବା ପରେ ତାଙ୍କର ବଡ଼ଭଉଣୀ ବ୍ରନସ୍କା ପ୍ୟାରିସ୍‌ଠାରେ ଜଣେ ଡାକ୍ତରଙ୍କ ସହିତ ବିବାହ କଲେ । ତା'ପରେ ସେ ସାନଭଉଣୀ ପାଖକୁ ଚିଠି ଲେଖିଲେ ଯେ ମୋର ଟଙ୍କା ପଇସା ଆଉ ଅଭାବ ନାହିଁ । ମୋର ନିକଟକୁ ଆଉ ଟଙ୍କା ପଠେଇବା ଦରକାର କରୁନାହିଁ ବରଂ ମୁଁ ତୋତେ ସାହାଯ୍ୟ କରିବି । ତୁ ଆସି ଏଠାରେ ରହି ପଢ଼ାପଢ଼ି କର ।

"ଏମନ୍ତ ଭାବୁଥାଇ ଯାହା
ତାଲେ ପ୍ରାପତ ହୁଏ ତାହା ।"

କ୍ୟୁରିଙ୍କର ତ ସବୁବେଳେ ପ୍ରବଳ ଇଚ୍ଛା ; ପାଠ ପଢ଼ିବା । ବାପାଙ୍କର ଅବସ୍ଥା ଦୃଷ୍ଟିରୁ ସିନା ତାଙ୍କ ପଢ଼ାରେ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲ, ଏଥର ଭଉଣୀଙ୍କଠାରୁ ଚିଠିପାଇ କ୍ୟୁରିଙ୍କର ମନ ଦୁଲୁଣି ମୋଡ଼ । ସେ ଆଜି ନଭେମ୍ବର ୧୮୯୧ ମସିହାରେ ପାଠ ପଢ଼ିବାକୁ ପ୍ୟାରିସ୍ ଅଭିମୁଖରେ ଯାତ୍ରା କଲେ । ସେଠାରେ ପହଞ୍ଚି ଫ୍ରାନ୍ସର ପ୍ରସିଦ୍ଧ ସରବନ୍ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ଭଉଣୀ ପାଖରେ ରହି ପଢ଼ାପଢ଼ି ଆରମ୍ଭ କରିଦେଲେ । କିନ୍ତୁ ଦୁଃଖର ବିଷୟ କଲେଜ ଅଧିକ ଦୂର ହେବାରୁ ସେ ଯାଆସ କରି ପାରିଲେ ନାହିଁ । ଶରୀର ଅତି ଅସୁସ୍ଥ ହେଲା । ତା'ପରେ କଲେଜ ହତା ଭିତରେ ରହି ପଢ଼ାପଢ଼ି କଲେ । "ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସେ ।" ଏ କଥା ଠିକ୍ । କ୍ୟୁରି ସେଠାରେ ଅତି କଷ୍ଟରେ ରହି ଧୈର୍ଯ୍ୟର ସହିତ ପଢ଼ାପଢ଼ିରେ ମନ ଦେଇଥାନ୍ତି । ଏପରିକି ଖଣ୍ଡେ ଲେଖାଏଁ ରୁଟି ଖାଇ ଟୋପେ ପାଣି ପିଇ ଦିନ କଟାଉ ଥାନ୍ତି ।

ମେରିଙ୍କର ପାଠ ପଢ଼ିବାଟି ମୁଖ୍ୟ ଏବଂ ଅନ୍ୟ ସବୁ ବିଷୟ ଗୌଣ ଥିଲା । ଏହି ସରବନ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ କ୍ୟୁରିଙ୍କର ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଗଣିତ, କବିତା, ସଙ୍ଗୀତ ଓ ଜ୍ୟୋତିଃ ଶାସ୍ତ୍ରରେ ଅସାଧାରଣ ପ୍ରବେଶ ଥିଲା । ସେ ପରେ ଲେଖିଥିଲେ ଯେ ଆମ୍ଭମାନଙ୍କ ମଧ୍ୟରେ କାହାରି ଜୀବନ ସରଳ, ସହଜ ଓ ସୁଖମୟ ହୋଇ ନପାରେ । କିନ୍ତୁ ସେଥିରେ ଅଛି ବା କ'ଣ ? ଆମ୍ଭମାନଙ୍କର ପ୍ରଚେଷ୍ଟା, ପ୍ରଯତ୍ନ ଓ ସର୍ବୋପରି ଆତ୍ମବିଶ୍ୱାସ ରହିବା ଉଚିତ । ପୃଥିବୀ ଆମ୍ଭମାନଙ୍କ ନିକଟରୁ କିଛି ଅବଦାନ ପାଇବାପାଇଁ ଆଶା କରିଛି ଏବଂ ଏହା ଆମ୍ଭଙ୍କୁ ଯେ କୌଣସି ଉପାୟରେ ତାହା ପୂରଣ କରିବାକୁ ହିଁ ପଡ଼ିବ । ଏହି ବିଶ୍ୱାସ ଅନୁସାରେ ସେ ଅବିଶ୍ରାନ୍ତ ଓ ଅବିଚଳିତ ଭାବରେ ନିଜର ଉଦ୍ଦେଶ୍ୟ ଅଭିମୁଖେ ଅଗ୍ରସର ହେଲେ ।

ପରିଶ୍ରମର ଫଳ କେବେହେଲେ ନଷ୍ଟ ହୋଇ ଯାଏ ନାହିଁ । ଏପରି କଷ୍ଟ ସହ୍ୟ କର୍ତ୍ତବ୍ୟରେ ତ୍ରୁଟି କରି ନଥିବାରୁ ତାଙ୍କର ସତେ ଯେପରି ଭାଗ୍ୟରବି ଉଦୟ ହେଲା । ୧୮୯୩ ମସିହା ବେଳକୁ କ୍ୟୁରି ୨୬ ବର୍ଷ ବୟସରେ ପଦାର୍ଥ ବିଜ୍ଞାନରେ ପ୍ରଥମ ସ୍ଥାନ ଅଧିକାର କଲେ, ଏବଂ ଗଣିତଶାସ୍ତ୍ରରେ ମଧ୍ୟ ଏମ୍. ଏସ୍. ସି. ପରୀକ୍ଷାରେ କୃତିତ୍ୱର ସହ ଦ୍ୱିତୀୟ ସ୍ଥାନ ଅଧିକାର କଲେ । ଚମତ୍କାର ! କି କଠୋର ସାଧନା ତାଙ୍କର ।

ଏଭଳି ଦେଶର କୃତୀପୁରୁଷଙ୍କ ଉପରେ ସରକାରଙ୍କ ଦୃଷ୍ଟି ପଡ଼ିବା ସ୍ୱାଭାବିକ । ତେଣୁ କ୍ୟୁରିଙ୍କର ଏ ଆଦର୍ଶ ଓ ପ୍ରଭାବ ପୋଲାଣ୍ଡ ସରକାରଙ୍କ ଦୃଷ୍ଟିରେ ପଡ଼ିଲା । ସରକାର ତାଙ୍କୁ ସାହାଯ୍ୟ କଲେ । ଏଣିକି କ୍ୟୁରିଙ୍କର ଅଭାବ ଆଉ ରହିଲା ନାହିଁ ।

ତାପରେ ତାଙ୍କର କର୍ମମୟ ଜୀବନ ଭିତରେ କଣ୍ଟକବନ ଭିତରେ ଜଣେ ତରୁଣ ବୈଜ୍ଞାନିକଙ୍କ ସହିତ ସାକ୍ଷାତ ହେଲା । 'ଗୁଣୀକୁ ଗୁଣୀ ଚିହ୍ନେ' । ତରୁଣ ବୈଜ୍ଞାନିକ ଯୁବକ କ୍ୟୁରିଙ୍କର ପ୍ରତିଭା ଦେଖି ମୁଗ୍ଧ ହୋଇ ତାଙ୍କ ସହିତ ୧୮୯୩ ଖ୍ରୀଷ୍ଟାବ୍ଦରେ ବିବାହ କରିଥିଲେ । ସେହି ତରୁଣ ବୈଜ୍ଞାନିକଙ୍କ ନାମ ହେଉଛି "ପିୟେର କ୍ୟୁରି ।"

ଏତ ଗଲା ତାଙ୍କର ଜ୍ଞାନ ଅର୍ଜ୍ଜନ କରିବା କଥା । ଖାଲି ଜ୍ଞାନ ଅର୍ଜ୍ଜନ କରି କେହି କେବେତ ବଡ଼ି ରହେ ନାହିଁ । ତାକୁ କାର୍ଯ୍ୟରେ ଲଗାଇଲେ ତାର ସଫଳତା ମିଳେ । କ୍ୟୁରି ମଧ୍ୟ ତାହା କାର୍ଯ୍ୟରେ ପରିଣତ କରି ଲୋକଙ୍କୁ ଚମକାଇ ଦେଇଥିଲେ ।

ଉଭୟେ ବିଜ୍ଞାନ ସମ୍ବନ୍ଧରେ ବହୁ ଚର୍ଚ୍ଚାକରି ବହୁ ତଥ୍ୟ ସଂଗ୍ରହ କଲେ । କ୍ରମେ କ୍ରମେ ସେ ଦିଗରେ ଉଭୟଙ୍କର ପ୍ରବଳ ଉତ୍ସାହ ଓ ଉଦ୍ୟମ ହେଲା । ବହୁ ବାଧାବିଘ୍ନ ଏଡ଼ି ସେମାନେ ଆଗକୁ ଗତି କଲେ । ତାଙ୍କର କ୍ଷୁଧା ତୃଷା ଭୁଲି ଦୀର୍ଘ ୭ବର୍ଷର ଯେଉଁ ଅଧ୍ୟବସାୟ-ତାର ଫଳ ଏତେ ଦିନକେ ମିଳିଲା । ୧୯୦୩ ମସିହାରେ ସେମାନେ



ପଙ୍କ ମାଟିରୁ ଗୋଟିଏ ଧାତୁ ଆବିଷ୍କାର କଲେ । ତାର ନାଆଁ "ରେଡ଼ିୟମ" । ଏହି ଧାତୁ ସୁନା ରୁପାଠାରୁ ଅଧିକ ମୂଲ୍ୟବାନ । ଏହା କର୍କଟ (କ୍ୟାନ୍‌ସର) ରୋଗର ମହୌଷଧି । ରେଡ଼ିୟମ୍ ଏତେ ତେଜସ୍ୱାନ୍ ଯେ ତାର ଗୋଟିଏ କଣିକା ହେଲେ ବି ବଡ଼ଗୋଟ ବରଫ ଖଣ୍ଡକୁ ମଧ୍ୟ ୪୫ ମିନିଟ ମଧ୍ୟରେ ଫୁଟନ୍ତା ଜଳରେ ପରିଣତ କରି ପାରିବ । ପୃଥିବୀ ମଧ୍ୟରେ ଏହି ରେଡ଼ିୟମ୍ ସବୁଠାରୁ ମୂଲ୍ୟବାନ ଧାତୁ । ଆମ ଭାରତରେ ଏହା ଖୁବ୍ କମ ପରିମାଣରେ ପ୍ରସ୍ତୁତ ହୋଇଛି ।

ଏତକରେ କ୍ୟୁରୀ ସନ୍ତୁଷ୍ଟ ନରହି ବିଜ୍ଞାନ ସମ୍ବନ୍ଧରେ ବହୁ ଗବେଷଣା ଚଳାଇଲେ । ଏଥିପାଇଁ ସେ ୧୯୦୮ ଖ୍ରୀଷ୍ଟାବ୍ଦରେ ନୋବେଲ ପୁରସ୍କାର ଓ ଡକ୍ଟରେଟ୍ ପାଇଥିଲେ ।

୧୯୦୬ ମସିହାରେ ତାଙ୍କର ସ୍ୱାମୀ ପିଏର୍ କ୍ୟୁରୀ ଆକସ୍ମିକ ଦୁର୍ଘଟଣାରେ ମରିଗଲେ । ସେତେବେଳକୁ ତାଙ୍କର ଯୋଡ଼ିଏ ସନ୍ତାନ । ସରକାର ପିଲାମାନଙ୍କ ପାଇଁ ପେନ୍‌ସନ ବ୍ୟବସ୍ଥା କରୁଥିଲେ । ମାତ୍ର କ୍ୟୁରୀ ତାହା ମନା କରିଥିଲେ । ସଂସାର ଜଞ୍ଜାଳ ଭିତରେ ରହି ମଧ୍ୟ

ସେ ବିଜ୍ଞାନ ଗବେଷଣାରୁ ଅର୍ଥଲାଭ ପାଇ ନାହାନ୍ତି, ବରଂ ଧନକୁ ଦାନ ତାଙ୍କର ପ୍ରବଳ ଇଚ୍ଛା ରହୁଥାଏ ।

ଅଧ୍ୟବସାୟର ଫଳ କେବେହେଲେ ନଷ୍ଟ ହୁଏ ନାହିଁ । ୧୯୧୦ ମସିହାରେ କ୍ୟୁରିଙ୍କର ଅଧିକ ଗବେଷଣା ଫଳରେ ଶେଷରେ ବାହାରିଲା ରଂଜନ-ରଶ୍ମି । ଚିକିତ୍ସା କ୍ଷେତ୍ରରେ ଆମର ଯେ କେତେ ପ୍ରଧାନ ସହାୟକ । କୋଟି କୋଟି ଲୋକ ବର୍ତ୍ତମାନ ଏହାର ଉପକାର ପାଉଛନ୍ତି । ଆଜିକାଲି ମାନବର ଶରୀରର କୌଣସି ଅଂଶ ଭାଙ୍ଗି ମକଚି ଗଲେ, ହୃତ୍‌ପିଣ୍ଡ କିମ୍ବା ଫୁସ୍‌ଫୁସ୍‌ର କୌଣସି ଯନ୍ତ୍ରଣା କିମ୍ବା ଶରୀର ଭିତରେ ଯେ କୌଣସି ରୋଗ ଆରମ୍ଭ ହେଲେ ତାହା ଏହି ରଞ୍ଜନ ରଶ୍ମି ସାହାଯ୍ୟରେ ଫଟୋ ନିଆଯାଇ ପାରୁଛି । ଏହାଦ୍ୱାରା ପ୍ରକୃତ ରୋଗ ଚିହ୍ନି ଲୋକଙ୍କୁ ଚିକିତ୍ସା କରାଯାଇ ପାରୁଛି । ଏ ପ୍ରକାର ଆଶ୍ଚର୍ଯ୍ୟଜନକ ଉଦ୍ଭାବନ ଫଳରେ କ୍ୟୁରି ପୁନର୍ବାର ୧୯୧୧ ମସିହାରେ ଦ୍ୱିତୀୟ ଥର ପାଇଁ ମଧ୍ୟ ନୋବେଲ ପୁରସ୍କାର ପାଇଥିଲେ । ଏପର୍ଯ୍ୟନ୍ତ ତାଙ୍କ ବ୍ୟତୀତ ଅନ୍ୟ କେହି ଲୋକ ଦୁଇଥର ନୋବେଲ ପୁରସ୍କାର ପାଇ ନାହାନ୍ତି । ଜଗତ ଆଶା କରୁଥିଲା ଯେ ଯଦି ଆଉ କିଛି ଦିନ ବଞ୍ଚି ରହିଥାନ୍ତେ, ବିଜ୍ଞାନ କ୍ଷେତ୍ରରେ ଆହୁରି କିଛି ନୂଆ ନୂଆ ତଥ୍ୟ ଉଦ୍ଭାବନ କରି ପାରିଥାନ୍ତେ । ଦୁଃଖର କଥା, ଏ କଳ୍ପନା ଆଉ କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ । ୧୯୩୪ ମସିହା ଜୁଲାଇ ୩ ତାରିଖରେ ସେ ସଂସାରରୁ ଚିରଦିନ ପାଇଁ ବିଦାୟ ନେଲେ । ନାରୀ ଜାତିର ମଥାମଣି ନକ୍ଷତ୍ର ସ୍ୱରୂପ ପୃଥିବୀ ଆକାଶର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କର ସ୍ଥିତି ବିଚ୍ୟୁତ ଘଟିଲା ।

ମେରିଙ୍କ ପରେ ବିଶ୍ୱର ବହୁ ବୈଜ୍ଞାନିକ ତାଙ୍କର ପଦ୍ଧତି ଅନୁସରଣ କଲେ । ତାଙ୍କ ଆବିଷ୍କାରରୁ ବହୁ ନୂତନ ତଥ୍ୟମାନ ପ୍ରସାରିତ ଓ ଭ୍ରମଶୂନ୍ୟ ହେଲା । ପରେ ବିଶିଷ୍ଟ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ମେରି କ୍ୟୁରିଙ୍କୁ ପ୍ରଶଂସା କରିବାକୁ ଯାଇ ଲେଖିଥିଲେ ଯେ ସମ୍ମାନପ୍ରଦା ମନୀଷୀ-ମାନଙ୍କ ମଧ୍ୟରୁ ମେରି କ୍ୟୁରିଙ୍କୁ ଖ୍ୟାତି ଓ ଯଶ କଳୁଷିତ କରିନାହିଁ । ତାଙ୍କର ଅମର କୀର୍ତ୍ତି ତାଙ୍କୁ ଚିରଦିନ ପାଇଁ ବଞ୍ଚାଇ ରଖିଛି ଓ ରଖିବ । ଲୋକେ ତାଙ୍କୁ କାଳ କାଳ ଧରି ଗର୍ବ ହେଉଥିବେ ।

———




## [ ଆଲଫ୍ରେଡ୍ ବର୍ଣ୍ଣାର୍ଡ଼ ନୋବେଲ ]

କେତେକ ଅଞ୍ଚଳରେ ଟ୍ରେନ୍ ଯାଉଥିବାବେଳେ ଦେଖିବେ ଦୀର୍ଘ ମାଇଲ ମାଇଲ ବ୍ୟାପୀ ପର୍ବତ ପାହାଡ଼ର ସୁଡ଼ଙ୍ଗ ଭିତର ଦେଇ ଟ୍ରେନ୍ ଗତି କରୁଛି, ସେତେବେଳେ ଦିନଟା ମଧ୍ୟ ଅମାବାସ୍ୟା ରାତିର ଗାଢ଼ ଅନ୍ଧକାର ଭଳି ଜଣାଯାଏ । ଦୁଇ କଡ଼ର ଶୀର୍ଷ ପାହାଡ଼କୁ ଅନାଇଲେ ଆଖି ପାଏ ନାହିଁ । କି ଆଶ୍ଚର୍ଯ୍ୟ ! ଏଭଳି ସୁବିଶାଳ ପାହାଡ଼ ପର୍ବତକୁ କାଟିଲା ବା କିଏ ? ମନୁଷ୍ୟ କ'ଣ ଏହାକୁ ହାତରେ ଖୋଳି ଗାଡ଼ି ରାସ୍ତା ନିର୍ମାଣ କରିପାରିଲା ? ଏଇଭଳି ଅନେକ ପ୍ରଶ୍ନ ମନରେ ଉଦୟ ହୁଏ—ମାତ୍ର ସମସ୍ତ ପ୍ରଶ୍ନର ଉତ୍ତର ଦେବାକୁ ସକ୍ଷମ କେବଳ ବିଜ୍ଞାନ । ବିଜ୍ଞାନ ବଳରେ ମନୁଷ୍ୟ ଆକାଶରେ ଉଡ଼ିପାରିଲା, ଚନ୍ଦ୍ରଲୋକକୁ ଯାଇପାରିଲା, ମହାସାଗର ମଧ୍ୟରେ ବିଚରଣ କରିପାରିଲା, ପରମାଣୁ ଅସ୍ତ୍ରଶସ୍ତ୍ର ତିଆରି କରିପାରିଲା, ଲକ୍ଷ୍ୟ ଲକ୍ଷ୍ୟ ମାଇଲ ଦୂରରେ ଥାଇ ମଧ୍ୟ ପରସ୍ପର ମଧ୍ୟରେ ଦେଖା ସାକ୍ଷାତ ଓ କଥାବାର୍ତ୍ତା କରିପାରିଲା—ଏହାଠାରୁ ବଳି ଆଉ ଆଶ୍ଚର୍ଯ୍ୟର ବିଷୟ ଦୁନିଆରେ ଆଉ କ'ଣ ହୋଇପାରେ ?

ଏ ଯୁଗରେ ବିଜ୍ଞାନର ଅଗ୍ରଗତି ଯୋଗୁ ଏହା ସବୁ ସମ୍ଭବ ହୋଇପାରୁଛି । ଭବିଷ୍ୟତରେ ଯେ ଏହାଠାରୁ ବଳି ଆଉ ଅସାଧ୍ୟ କାର୍ଯ୍ୟକୁ ବିଜ୍ଞାନ ବଳରେ ଆୟତ୍ତ କରି ନ ହେବ, ତା କିଏ କହିପାରେ ?

ସମସ୍ତେ ଜାଣନ୍ତି ମନୁଷ୍ୟ ହାତହତିଆର ବଳରେ ଖୋଳାଖୋଳି ଇତ୍ୟାଦି କାର୍ଯ୍ୟ କରିପାରେ । ମାତ୍ର ଖାଲି ପଥରରେ ଗଢ଼ା ପାହାଡ଼ ପର୍ବତକୁ କାଟିପାରିବା ଯେ ମନୁଷ୍ୟ ପକ୍ଷରେ ବଡ଼ ଦୁସାଧ୍ୟର ବିଷୟ ଏ କଥା ସମସ୍ତେ ସ୍ୱୀକାର କରିବେ । ଯଦି ମନୁଷ୍ୟଙ୍କୁ ଶାବଳ କିମ୍ବା କୋଦାଳରେ ପାହାଡ଼ ଖୋଳିବାକୁ ଦେଇଥାଆନ୍ତା, ତେବେ ଏହା ବିଶେଷ କଷ୍ଟକର ଓ ସମୟସାପେକ୍ଷ ମଧ୍ୟ ହୁଅନ୍ତା ।

ମନୁଷ୍ୟର ଅସାଧ୍ୟ ବୋଲି ଦୁନିଆରେ କିଛି ନାହିଁ—ସେ ଯେଉଁଠି ଦେଖିଲା ବଳରେ ପାରିବ ନାହିଁ ସେଇଠି ବଳ ପ୍ରୟୋଗ କରି ଅସାଧ୍ୟକୁ ସାଧନ କରିବ—ଯୁଗ ଯୁଗ ମନୁଷ୍ୟ ତାର ବୁଦ୍ଧିବୃତ୍ତି, ବଳ, ସବୁ କ୍ଷେତ୍ରରେ ପ୍ରୟୋଗ କରି ଆସିଛି ଏବଂ ସବୁ କାର୍ଯ୍ୟକୁ ନିଜର ଆୟତ୍ତାଧୀନ କରି ପାରିଛି । ଆବଶ୍ୟକ ହେଲେ ମନୁଷ୍ୟ ସୁଦୀର୍ଘ ହିମାଳୟ ପର୍ବତକୁ ଛାଡ଼ି ଦେଇ ତିବ୍ବତକୁ ରେଳପଥ ପକାଇ ପାରିବ—ଏକଥା ଜାଣିଲେ ଆମେ ଆଶ୍ଚର୍ଯ୍ୟ ହେବା ଯେ ମଣିଷ କିପରି ଓ କାହା ବଳରେ ସହଜ ଓ ସୂକ୍ଷ୍ମ ଉପାୟରେ ଏକ ସେକେଣ୍ଡ ମଧ୍ୟରେ ପଥର ଭଳି ପାହାଡ଼କୁ ଫଟାଇ ଚୂର୍ମାର୍ କରି ଦେଇ ପାରୁଛି । ଏକଥା ସମ୍ଭବ ହୋଇ ପାରୁଛି କେବଳ ଡିନାମାଇଟ୍, ବିସ୍ଫୋରକ ବଳରେ ।

ଏହି "ଡିନାମାଇଟ୍ କଣ" କଣ ? ତାହା କିପରି ଓ କିଏ ତାକୁ ଉଦ୍ଭାବନ କଲେ ଏହା ପ୍ରତ୍ୟେକଙ୍କର ଜାଣିବାର କଥା । ସୁଇଡ଼େନ୍ ଦେଶର ରାଜଧାନୀ ଷ୍ଟକ୍‌ହଲମ୍‌ଠାରେ ୧୮୩୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨୧ ତାରିଖ ଦିନ ମହାମତି ଆଲ୍‌ଫ୍ରେଡ଼୍ ବର୍ଣ୍ଣ୍ଡ଼୍ ନୋବେଲ୍ ଜନ୍ମ ହୋଇ-ଥିଲେ । ପିଲାଦିନେ ସେ ଅତି ଦୁର୍ବଳ ଥିଲେ । ପାଠଶାଠ ମଧ୍ୟ ବେଶୀ ପଢ଼ି ନ ଥିଲେ । ତାଙ୍କର ପିତା ଥିଲେ ଜଣେ ଇଞ୍ଜିନିୟର୍ । ତତ୍କାଳୀନ ରୁଷିଆର ରାଜଧାନୀ ସେଣ୍ଟପିଟର୍ସବର୍ଗଠାରେ ତାଙ୍କ ବାପାଙ୍କର

ଗୋଟିଏ 'ଟରପେଡୋ' କାରଖାନା ଥିଲା । ଏହି ଟରପେଡୋ ଅସ୍ତ୍ରର ସାହାଯ୍ୟ ନେଇ ଜଳଯୁଦ୍ଧ ସମୟରେ ପାଣି ଜାହାଜଗୁଡ଼ିକୁ ଧ୍ୱଂସ କରି ଦିଆଯାଏ । ଏହା ମୃଦଙ୍ଗ ସ୍ୱରୂପ ଓ ଏଥିରେ ବାରୁଦ ଭର୍ତ୍ତି ହୋଇଥାଏ । ଏହି ଟରପେଡୋ କାରଖାନାରେ ନୋବେଲ୍ କାର୍ଯ୍ୟ କରୁଥିବା ବେଳେ ରସାୟନ ବିଦ୍ୟା, ପଦାର୍ଥ ବିଦ୍ୟା, ଶିଳ୍ପ ବିଦ୍ୟା ହାସଲ କରିବାପାଇଁ ଘର ଆଗ୍ରହୀ ଥିବାର ଦେଖାଗଲା । ବାପା ଏହା ଜାଣିପାରି ତାଙ୍କୁ ଆମେରିକାର ଯୁକ୍ତରାଷ୍ଟ୍ରକୁ ଶିକ୍ଷା କରିବା ନିମିତ୍ତ ପଠାଇଲେ । ସେତେବେଳେ ତାଙ୍କୁ ମାତ୍ର ସତର ବର୍ଷ । ସେଠାକୁ ଯାଇ ଏ ସମସ୍ତ ଶିକ୍ଷା ପାଇବା ସମୟରେ ହଠାତ୍ ଦିନେ ଗୋଟିଏ ନୂତନ ତଥ୍ୟର ସନ୍ଧାନ ପାଇବା ପାଇଁ ଆଲ୍‌ଫ୍ରେଡ୍ ପ୍ରୟାସୀ ହେଲେ ।

ମନୁଷ୍ୟ ତାର ବାସନାକୁ କାର୍ଯ୍ୟରେ ପରିଣତ କରିବାପାଇଁ ସର୍ବଦା ଚେଷ୍ଟିତ ଥାଏ । ମାତ୍ର ତାହାର ଅନୁକୂଳ ବାତାବରଣ ସୃଷ୍ଟି କରିବା ଉଚିତ । "ଇଚ୍ଛା ଥିଲେ ଯେ ଉପାୟ ମିଳେ" ଏହା ନୋବେଲଙ୍କ କାର୍ଯ୍ୟକଳାପରୁ ବେଶ୍ ଜଣାପଡ଼େ । ଏହାର ଏକମାତ୍ର କାରଣ ହେଉଛି—ତାଙ୍କର ବାପା ଇଞ୍ଜିନିୟର ଓ ତାଙ୍କର ଗୋଟିଏ କାରଖାନା ଥିଲା ।

ନୋବେଲ କାଳବିଳମ୍ବ ନ କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ବାପାଙ୍କ ସହଯୋଗ କ୍ରମେ ସେହି ଶକ୍ତି ସମ୍ପନ୍ନ ବିସ୍ଫୋରକ ସମ୍ବନ୍ଧରେ ଗବେଷଣା ଚଳାଇଲେ । ଗବେଷଣା କ୍ଷେତ୍ରରେ ପ୍ରଥମେ ଗୋଟିଏ ଉପାଦାନ ପାଇଲେ । ଏହା ଏକ ଶକ୍ତିଶାଳୀ ବିସ୍ଫୋରକ । ତାର ନାମ ହେଉଛି ନାଇଟ୍ରୋଗ୍ଲିସରିନ୍ । ଏହି ନାଇଟ୍ରୋଗ୍ଲିସରିନ୍ ଯଦି ବାୟୁର ସମ୍ପର୍କରେ ଆସେ ବା ଅକ୍ସିଜେନ୍ ସହିତ କୌଣସି ପଦାର୍ଥରେ ମିଶାଇ ଦେଇ ସେଥିରେ ନିଆଁ ଲଗାଇ ଦିଆଯାଏ ତେବେ ତାହା ସଙ୍ଗେ ସଙ୍ଗେ ଫାଟିଯାଇ ଗୋଟିଏ ଗୋଟିଏ ପାହାଡ଼ ପର୍ବତ ବା ଗୋଟିଏ ସହରକୁ ଏକାବେଳକେ ଧ୍ୱଂସ କରି ଦେବ ।

ଏହି ନାଇଟ୍ରୋଗ୍ଲିସରିନ୍ ଗୋଟିଏ ତରଳ ପଦାର୍ଥ । ଏହା ଯେ କୌଣସି ବିସ୍ଫୋରଣ କାର୍ଯ୍ୟରେ ବ୍ୟବହାର କରିବା ଦ୍ୱାରା ଅନେକ

ବିସ୍ଫୋରଣର ଆଶଙ୍କା ଥାଏ । ଏଣୁ ତାହାକୁ ସବୁ ବେଳେ ବୋତଲରେ ଠିପି ଦେଇ ବନ୍ଦ କରାଯାଇଥାଏ । କୌଣସି ପ୍ରକାରେ ଏହା ଯଦି ଟିକିଏ ବାହାରକୁ ଆସିବ, ତେବେ ତାହା କେତେ ଅନିଷ୍ଟ କରିବ ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଏତେଦିନର ଗବେଷଣା ଓ ଅଧ୍ୟବସାୟ ପରେ ନୋବେଲ୍ ଯେଉଁ ନାଇଟ୍ରୋଗ୍ଲିସରିନ୍ ଉଦ୍ଭାବନ କଲେ ତାହା ଜଗତ ପକ୍ଷେ ଅତି ଭୟାବହ କ୍ଷତିକାରକ ହେଲା । ଅନ୍ୟ କେହି ହୋଇଥିଲେ ଗବେଷଣା ସମ୍ଭବତଃ ସେଇଠାରୁ ସ୍ଥଗିତ ରଖିଥାନ୍ତେ । ମାତ୍ର ନୋବେଲ୍ ଚିନ୍ତା କଲେ ଯାହାଠାରେ ଏତେ ତୀବ୍ର ଶକ୍ତି ରହିଛି, ସେ ହୁଏତ ନିଶ୍ଚୟ କ୍ଷତି କରିବ, କିନ୍ତୁ ତାକୁ ଯଦି ଉପଯୁକ୍ତ କାର୍ଯ୍ୟରେ ବିନିଯୋଗ କରାଯାଏ ତେବେ ନିଶ୍ଚୟ ଭଲ ଫଳ ମିଳିବ ।

ଏହା ଚିନ୍ତାକରି ନୋବେଲ କେବେହେଲେ ତାଙ୍କର ଗବେଷଣାରୁ ବିରତ ହେଲେ ନାହିଁ । ଏପରି ସମୟ ଆସିଲା, ଯେ କି ସେ ଗବେଷଣାରୁ ଅମର ଅତି ପ୍ରୟୋଜନୀୟ ବସ୍ତୁ "ଡାଇନାମାଇଟ୍" ବାହାର କରିପାରିଲେ ।

ଦିନକର ଘଟଣା । ନୋବେଲ୍ କାରଖାନାରେ ଗବେଷଣା କରୁଥିବାବେଳେ ତାଙ୍କର ସହକର୍ମୀଙ୍କ ହାତରୁ ହଠାତ୍ ଗୋଟିଏ ବୋତଲ ତଳେ ଖସି ପଡ଼ିଲା । ସେଥିରେ ଥିବା ନାଇଟ୍ରୋଗ୍ଲିସରିନ୍ ତଳେ ଥିବା ବାଲି ଉପରେ କିଛି ପଡ଼ିଗଲା । କାରଖାନାଟି ସଙ୍ଗେ ସଙ୍ଗେ ଯେଉଁ ଭସ୍ମ ହୋଇଯିବା ଆଶଙ୍କାରେ ଅସ୍ଥିର ହୋଇ ତତ୍‌କ୍ଷଣାତ୍ ସେ ଚିତ୍କାର କରି ଉଠିଲେ, ସର୍ବନାଶ, ସର୍ବନାଶ । ନୋବେଲ ସେଠାକୁ ଦଉଡ଼ି ଆସିଲେ । କିନ୍ତୁ ଉପାୟ ନ ଦେଖି ସ୍ତମ୍ଭୀଭୂତ ହୋଇ ଠିଆ ହୋଇଗଲେ । କିଛିକ୍ଷଣ ପରେ ସେ ଭାବିଲେ, ଏଭଳି ଭୀଷଣ ବିସ୍ଫୋରକ ବାଲି ଉପରେ କେବଳ ପଡ଼ି ରହିଛି କିପରି ? ତାପରେ ସେହି ବାଲିମିଶା ନାଇଟ୍ରୋଗ୍ଲିସରିନ୍‌କୁ ହାତରେ ପୁଣି ପରୀକ୍ଷା ଆରମ୍ଭ କଲେ । ତା'ପରେ ଏହି ଭୀଷଣ ବିସ୍ଫୋରକ ପଦାର୍ଥକୁ ବଶୀଭୂତ କରିବାର ଉପାୟ ଉଦ୍ଭାବନ କଲେ । ସେ ସେଇଠୁ ବୁଝିଲେ ଯେ ଯେଉଁ ପଦାର୍ଥର ଶୋଷଣ ଶକ୍ତି ଅଛି, ତା ସହିତ ନାଇଟ୍ରୋଗ୍ଲିସରିନ୍ ମିଶାଇଲେ ମାରାତ୍ମକ

ବିସ୍ଫୋରକ ପ୍ରସ୍ତୁତ ହୋଇ ପାରିବ । ଯାହାଦ୍ୱାରା ବଡ଼ ବଡ଼ ପାହାଡ଼ ପର୍ବତକୁ ଅଳ୍ପକ୍ଷଣରେ ଧ୍ୱଂସ କରି ହେବ । ବାଲି ସହିତ ନାଇଟ୍ରୋଗ୍ଲିସରିନ୍ ମିଶାଇଲେ ବିସ୍ଫୋରକ ପ୍ରସ୍ତୁତ ହେବ ମାତ୍ର ତାହା ଭଲ ଫଳ ଦେବ ନାହିଁ ବୋଲି ବୁଝିଥିଲେ । ତାପରେ ବାଲି ବ୍ୟତୀତ 'କାଇସେଲଗର୍' ଏକ ସଚ୍ଛିଦ୍ର ପଥରର ଆଶ୍ରୟ ନେଇ ସେ ପରୀକ୍ଷା ଚଳାଇଲେ । ନୋବେଲ ଏଥର ତାଙ୍କର ଅଧ୍ୟବସାୟର ଶେଷ ଫଳ ପାଇଲେ । ଏହି ବିସ୍ଫୋରକ ଖୁବ୍ ନିରାପଦ ହେଲା ଏବଂ ଏହିଠାରୁ ତାର ନାମ ଦେଲେ 'ଡିନାମାଇଟ୍' ।

୧୮୬୭ ଖ୍ରୀଷ୍ଟାବ୍ଦରେ ଏହି ଶକ୍ତିସମ୍ପନ୍ନ ବିସ୍ଫୋରକ ସୃଷ୍ଟି ସମ୍ଭବ ହୋଇପାରିଲା କେବଳ ନୋବେଲଙ୍କ ଯୋଗୁ । ପୃଥିବୀ ବ୍ୟାପୀ ଏହାର ପ୍ରଚାର ହୋଇଗଲା । ଲୋକେ ଏକଥା ଶୁଣି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ନୋବେଲ୍‌ଙ୍କୁ ଧନ୍ୟ ଧନ୍ୟ କଲେ । ପ୍ରଶଂସା ହେଲା ଉତ୍ସାହର ମୂଳଦୁଆ । ତତ୍ପରେ ନୋବେଲ୍ ସେଥିରୁ ନିବୃତ୍ତ ନ ହୋଇ ପୁନର୍ବାର ଉତ୍ସାହର ସହିତ ଗବେଷଣା କାର୍ଯ୍ୟ ଚଳାଇଲେ । ଯାହା ଫଳରେ କି ଶେଷରେ ପୁଣି ଏକ ବିସ୍ଫୋରକ ଉଦ୍ଭାବନ କଲେ— ତାହାର ନାମ "ଗନ୍-କଟନ୍" ।

ଆଜକାଲି ଆମେ ଯେଉଁ ତୋପ ବନ୍ଧୁକ ଇତ୍ୟାଦି ଯୁଦ୍ଧର ସରଞ୍ଜାମ ଯାହା କିଛି ବ୍ୟବହାର କରୁଛେ ତାହା ସବୁ ସମ୍ଭବ ହୋଇ ପାରିଛି କେବଳ "ଡିନାମାଇଟ୍" ଯୋଗୁଁ । ବନ୍ଧୁକର ଗୁଳି ତୋପର ଗୁଳାକୁ ବହୁ ଦୂର ନିକ୍ଷେପ କରିଯାଇ ପାରୁଛି "ଡିନାମାଇଟ୍" ବଳରେ । ଏହା ଜଗତର ଯେତିକି ଅପକାର କରୁଛି ଏବଂ ତାହାଠାରୁ ବଳି ଅଧିକ ଉପକାର ମଧ୍ୟ କରି ପ ରୁଛି । "ଡିନାମାଇଟ୍"ଠାରୁ ଅଧିକ ଗୁଣରେ ଭୀଷଣ ଓ ମାରାତ୍ମକ ଯୁଦ୍ଧ ଅସ୍ତ୍ରଗୁଡ଼ିକ ଆଜକାଲି ପ୍ରସ୍ତୁତ ହୋଇ ପାରୁଥିଲେ ମଧ୍ୟ "ଡିନାମାଇଟ୍"ର ବ୍ୟବହାର ବହୁ କ୍ଷେତ୍ରରେ ରହିଛି ।

"ଡିନାମାଇଟ୍"ର ଉଦ୍ଭାବନ ଫଳରେ ଫ୍ରାନ୍ସ, ଇଟାଲି, ସ୍ପେନ୍, ଇଂଲଣ୍ଡ, ସ୍କଟଲଣ୍ଡ, କାଲିଫର୍ଣ୍ଣିଆ ଓ ସୁଇଡ଼େନ ପ୍ରଭୃତି

ଦେଶମାନଙ୍କରେ ବଡ଼ କାରଖାନାମାନ ବସିଲା । ଏହା ଦ୍ୱାରା ନୋବେଲଙ୍କର ବହୁଳ ଧନ ରୋଜଗାରର ବାଟ ଫିଟିଗଲା । ସେ ଅପର୍ଯ୍ୟାପ୍ତ ଟଙ୍କା ପାଇବା ଫଳରେ ନିଜର ସୁପାର୍ଜିତ ଧନକୁ ଦେଶର କୌଣସି ଉନ୍ନତିକର କାର୍ଯ୍ୟରେ ଖର୍ଚ୍ଚ କରିବାକୁ ସଂକଳ୍ପ କଲେ । ତେଣୁ ନୋବେଲ ଏକ ଚରମ ପତ୍ରଦ୍ୱାରା ୧୮୯୫ ଖ୍ରୀଷ୍ଟାବ୍ଦରେ ପାଞ୍ଚଗୋଟି ବହୁମୂଲ୍ୟ ପୁରସ୍କାର ଦାନ କରିବାକୁ ବ୍ୟବସ୍ଥା କଲେ । ସେ ଦାନର ପରିମାଣ ହେଉଛି ୨ କୋଟି ୪୦ ଲକ୍ଷ ଟଙ୍କା । ଏହି ଟଙ୍କାର ସୁଧରୁ ପ୍ରତିବର୍ଷ ପୁରସ୍କାର ଦିଆଯାଇ ଆସୁଅଛି । ସେହି ପାଞ୍ଚଗୋଟି ପୁରସ୍କାର ହେଲା ପଦାର୍ଥ ବିଦ୍ୟା, ରସାୟନ ବିଦ୍ୟା, ଶରୀରତତ୍ତ୍ୱ, ଭେଷଜ ବିଜ୍ଞାନ ଓ ସାହିତ୍ୟ ବିଷୟର ଅନ୍ତର୍ଗତ । ନୋବେଲଙ୍କ ଦାନ ଅନୁସାରେ ସେହି ପ୍ରାଇଜର ନାମ "ନୋବେଲ ପ୍ରାଇଜ୍" ଅଛି । ୧୯୦୧ ଖ୍ରୀଷ୍ଟାବ୍ଦରୁ ଏହା ପ୍ରଚଳିତ ହୋଇ ଆସୁଛି । ପ୍ରତିବର୍ଷ ଡିସେମ୍ବର ମାସ ୧୦ ତାରିଖରେ ପୁରସ୍କାରପ୍ରାପ୍ତ ବ୍ୟକ୍ତିଙ୍କ ନାମ ଘୋଷଣା କରାଯାଇ ସେମାନଙ୍କୁ ଅର୍ଥ, ସ୍ୱର୍ଣ୍ଣପଦକ ଓ ଉଚ୍ଚ ସମ୍ମାନ ଦିଆଯାଏ ।

ଆମ ଭାରତର ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର "ଗୀତାଞ୍ଜଳୀ" ପୁସ୍ତକ ଲେଖି ୧୯୧୩ ଖ୍ରୀଷ୍ଟାବ୍ଦରେ ଏହି ନୋବେଲ୍ ପ୍ରାଇଜ ପାଇଥିଲେ ଏବଂ ୧୯୩୦ରେ ସାର୍ ଚନ୍ଦ୍ରଶେଖର ଭେଙ୍କଟ ରମଣ ପଦାର୍ଥ ବିଦ୍ୟାର ଗବେଷଣା ଯୋଗୁଁ ଏହି ପୁରସ୍କାର ଲାଭ କରିଥିଲେ ।

ମାତ୍ର ପରିତାପର ବିଷୟ "ନୋବେଲ ପ୍ରାଇଜ୍" ବ୍ୟବସ୍ଥା କରିବାର ଠିକ୍ ବର୍ଷକ ପରେ ନୋବେଲ ରସାୟନାଗାରରେ କାର୍ଯ୍ୟ କରୁଥିବା ବେଳେ ହଠାତ୍ ତାଙ୍କର ମୃତ୍ୟୁ ହେଲା । କିନ୍ତୁ ସେ ଯେଉଁ ଅକ୍ଷୟ କୀର୍ତ୍ତି ଅର୍ଜନ କରି ଯାଇଛନ୍ତି ସେଥିପାଇଁ ପୃଥିବୀର ଲୋକେ ତାଙ୍କୁ କାଳ କାଳ ଧରି ସ୍ମରଣ କରୁଥିବେ ।



# ଯକ୍ଷ୍ମାରୋଗର ଯମ

ଆଜକାଲି ପୃଥିବୀରେ ମନୁଷ୍ୟ ଯେତେ ପ୍ରକାର ଦୁଃସାଧ୍ୟ ରୋଗର ସମ୍ମୁଖୀନ ହେଉଛି ତାହାର ହିସାବ ରଖିବା ବଡ଼ କଠିନ । ବେଳେ-ବେଳେ ଏପରି ରୋଗ ଦେହକୁ ଆକ୍ରମଣ କରେ ଯେ ଡାକ୍ତର କବିରାଜମାନଙ୍କ ପକ୍ଷରେ ଚିହ୍ନିବା ବଡ଼ କଷ୍ଟକର ହୋଇଥାଏ । ଏହି ଦୁଃସାଧ୍ୟ ରୋଗରେ ପଡ଼ିଲେ ମନୁଷ୍ୟ ମୃତ୍ୟୁମୁଖରେ ପଡ଼ିବା ସ୍ୱାଭାବିକ । ମାତ୍ର ଏହି ଦୁଃସାଧ୍ୟ ରୋଗରୁ ଯେ ମନୁଷ୍ୟ ଆଜି ବଞ୍ଚି ଯାଇ ପାରୁଛି ଏହା ମଧ୍ୟ ଜାଣିବା ଉଚିତ । ଏହାହିଁ ଆମ ଦୂରଦ୍ରଷ୍ଟା ବୈଜ୍ଞାନିକମାନଙ୍କର ଅକ୍ଲାନ୍ତ ସାଧନାର ଫଳ ।

ବୈଜ୍ଞାନିକମାନଙ୍କର ଗବେଷଣାଲବ୍ଧ ତଥ୍ୟ ସମୂହକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ସେମାନଙ୍କର ଉଦ୍ଭାବନ ହେଉଛି ଦୁଇ ପ୍ରକାର । ବର୍ଷ ପରେ ବର୍ଷ ଗବେଷଣା କରିବା ପରେ ଏପରି ଏକ ଶୁଭ ମୁହୂର୍ତ୍ତରେ ସେମାନେ ଆକସ୍ମିକ ଭାବରେ ଅପୂର୍ବ ପଦାର୍ଥର ଉଦ୍ଭାବନ କରିବାକୁ ସମର୍ଥ ହୋଇଥାଆନ୍ତି । ଗବେଷଣାଲବ୍ଧର ତଥ୍ୟ ପ୍ରକାଶ ଯେ ଆକସ୍ମିକ, ତା ନୁହେଁ । ବହୁତ ବାଧାବିଘ୍ନ ଓ ଘାତପ୍ରତିଘାତ ମଧ୍ୟ ଦେଇ ଫଳଲାଭର ଆଶା ରଖି ଗବେଷଣା କାର୍ଯ୍ୟ ହୋଇଥାଏ । ଏହାର ମୂଳରେ ନିହିତ ହୋଇଥାଏ ଦୂରଦୃଷ୍ଟି, ଜୀବନ କାଳ ଧରି କଠୋର ସାଧନା, କଠିନ ପରିଶ୍ରମ ଓ ସୂକ୍ଷ୍ମ ବୁଦ୍ଧିର ବଳରେ । ଆଧୁନିକ ବିଜ୍ଞାନ ଯୁଗରେ ବୈଜ୍ଞାନିକମାନଙ୍କ ମଧ୍ୟରେ ସେଲ୍‌ମ୍ୟାନ୍ ୱ୍ୟାକ୍‌ସମ୍ୟାନ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଏହି ଋଟଷ୍ଟ କ୍ଷଣଜନ୍ମା ବୈଜ୍ଞାନିକ ଓ୍ୱାକ୍‌ସମ୍ୟାନ୍‌ଙ୍କର ବହୁତ ଦୂରଦୃଷ୍ଟି ଥିଲି । ପିଲାଦିନରୁ ଅଦୃଶ୍ୟ ଜୀବାଣୁମାନଙ୍କ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବା ଥିଲା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ । ଦୂରଦୃଷ୍ଟି ବଳରେ ଓ୍ୱାକ୍‌ସମ୍ୟାନ୍ ଅଦୃଶ୍ୟ ଜୀବାଣୁର ସନ୍ଧାନ ପାଇ ପାରିଥିଲେ । ସେ ଶରୀରକୁ ବାହ୍ୟ ବିଷାକ୍ତ ଜୀବାଣୁର ଆକ୍ରମଣରୁ ରକ୍ଷାକରିବା ପାଇଁ ଏକ ଜୀବାଣୁନାଶକ ଦ୍ରବ୍ୟ ଉଦ୍ଭାବନ କରିଥିଲେ । ତାର ନାମ ହେଉଛି "ଷ୍ଟ୍ରେପ୍‌ଟୋ ମାଇସିନ୍" । ଏହା ଦୁଃସାଧ୍ୟ ଯକ୍ଷ୍ମାରୋଗର ନିବାରଣ ପାଇଁ ଅମୋଘ ଔଷଧ । ତାଙ୍କର ଏହି ଅଦମ୍ୟ ଚେଷ୍ଟା ଓ ଅଧ୍ୟବସାୟ ଫଳରେ ସେ ଆଜି ପୃଥିବୀ ପ୍ରସିଦ୍ଧ ।

ଏହି ମହାମାନ୍ୟ ବ୍ୟକ୍ତି ୧୮୮୮ ମସିହା ଜୁଲାଇ ମାସ ତା୨୨ରିଖରେ ରୁଷ ଦେଶ ଅନ୍ତର୍ଗତ ପ୍ରୁକାଇନ୍‌ଠାରେ ଏକ ଇହୁଦୀ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବନାମ ସେଲ୍‌ମ୍ୟାନ୍ ଆବ୍ରାହମ୍ ଓ୍ୱାକ୍‌ସ୍‌ମ୍ୟାନ । ତାଙ୍କର ବାଲ୍ୟକାଳରେ ପ୍ରାଥମିକ ଶିକ୍ଷା ରୁଷ ଦେଶ ମଧ୍ୟରେ ହିଁ ଶେଷ ହୋଇଥିଲା । ତାପରେ ଜୀବ ବିଜ୍ଞାନ ପ୍ରତି ତାଙ୍କର ଅଧିକ ଆଦର ଥିବା ହେତୁ ସେ ବ୨୨ର୍ଷ ବୟସରେ ଆମେରିକା ଯୁକ୍ତରାଷ୍ଟ୍ରର ରଜର୍ସ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ସେଠାରେ ଅଧ୍ୟୟନ କଲେ ।

ପିଲାଦିନରୁ ବାଳକ ଓ୍ୱାକସ୍‌ମ୍ୟାନଙ୍କର ମାଟି ପ୍ରତି ବିଶେଷ ଶ୍ରଦ୍ଧା ଥିଲା । ମାଟିକୁ ପରୀକ୍ଷା କରି ତା ସମ୍ବନ୍ଧରେ ଜ୍ଞାନଲାଭ କରିବା ପିପାସା ତାଙ୍କର ଦିନକୁ ଦିନ ବଢ଼ିବାକୁ ଲାଗିଲା । ବିଲରେ ହଳ ହେବା ସମୟରେ ବିଲକୁ ଯାଇ ହଳ ସିଆରରୁ ମାଟି ମୁଠାଏ ଲେଖାଁ ଆଣି ବାରମ୍ବାର ଦେଖିବା, ସେଥିରୁ ଛୋଟ ଛୋଟ ପୋକ ବେଖିଲେ ତାକୁ ନିରୀକ୍ଷଣ କରି ଦେଖିବା ଓ ଛୋଟ ଛୋଟ ଗଛଗୁଡ଼ିକ ଅଙ୍କୁରିତ ହେଲା ବେଳେ ତାକୁ ଲକ୍ଷ୍ୟ କରିବା ହେଲା ତାଙ୍କର ଦୈନ୍ୟନ୍ଦିନ କର୍ତ୍ତବ୍ୟ । ମାଟି ପରୀକ୍ଷା ପ୍ରତି ତାଙ୍କର ଏହି ଆଗ୍ରହ ତାହା ପରବର୍ତ୍ତୀ ଜୀବନକୁ ପ୍ରଭାବିତ କରି ପାରିଥିଲା । ଗବେଷଣା ଫଳରେ ସେ ମାଟି ପରୀକ୍ଷା କରି ତା ମଧ୍ୟରୁ ଅମୂଲ୍ୟ ସମ୍ପଦ ପାଇଥିଲେ । ପିଲାଦିନରୁ ମାଟି ପରୀକ୍ଷା

କରିବା ପାଇଁ ତାଙ୍କର ଯେତିକ ଅନୁରାଗ, ଅପକାରୀ ଜୀବାଣୁମାନଙ୍କ ପ୍ରତି ସେତିକ ମଧ୍ୟ ବିରାଗ ଥିଲା । ଏଣୁ ବାଲକ ଓ୍ୟାକସ୍‌ମ୍ୟାନ୍ ଏହି ଦୃଷ୍ଟିଭୂତ ଭାବନା ନେଇ ଅପକାରୀ ଜୀବାଣୁ ବିରୁଦ୍ଧରେ ଅଭିଯାନ ଚଳାଇ ଥିଲେ ।

ସେ ଆଉ ବିଳମ୍ବ ନ କରି ଲାଗି ପଡ଼ିଲେ ଜୀବାଣୁ ବିଜ୍ଞାନର ଗବେଷଣାରେ । ମାଟି ମଧ୍ୟରୁ ଅସଂଖ୍ୟ ଜୀବାଣୁକୁ ନେଇ ଆସି ପୋଷିଲେ ଏବଂ ସେମାନଙ୍କର ଫସଲ ଉପରେ କି ପ୍ରତିକ୍ରିୟା ଅଛି ତାକୁଇ ମଧ୍ୟ ନିରୀକ୍ଷଣ କଲେ । ମାଟି ହେଲା ଅସଂଖ୍ୟ ଜୀବାଣୁର ଘର । ଜୀବମାନଙ୍କର ଉପରେ ଏହି କ୍ଷୁଦ୍ର କ୍ଷୁଦ୍ର ଅଣୁ ବିଶିଷ୍ଟ ବୀଜାଣୁମାନଙ୍କର ପ୍ରଭାବ ବେଶି । ଜୀବ ମରିଗଲା ପରେ ତାର ମୃତ ଦେହକୁ ଏହି ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ବୀଜାଣୁଗୁଡ଼ିକ ତାକୁ ମାଟିରେ ମିଶାଇ ଦିଅନ୍ତି । ଏହି କ୍ଷୁଦ୍ର ବୀଜାଣୁ-ଗୁଡ଼ିକ ଆମର ଅଦୃଶ୍ୟରେ ରହି ସବୁବେଳେ ନିଜ ନିଜ ମଧ୍ୟରେ ସଂଗ୍ରାମରେ ବ୍ୟସ୍ତ ଥାଆନ୍ତି । ପିଲାଟି ଦିନରୁ ଓ୍ୟାକସ୍‌ମ୍ୟାନଙ୍କର ମାଟି ପରୀକ୍ଷା କରିବାର ବାସନା ଯେଉଁ ବଳବତୀ ଥିଲା ତାହା ଆଜି ସେ ଉପଲବ୍ଧି କଲେ । ଜୀବାଣୁ ସମ୍ବନ୍ଧୀୟ ଗବେଷଣା ଭିତରେ ଜୀବର କ୍ଷୟସାଧନକାରୀ ଜୀବାଣୁ କିଏ ତାହା ଜାଣିବା ପାଇଁ ଅନୁଧ୍ୟାନ କଲେ ।

ବିଭିନ୍ନ ଦେଶରୁ ମାଟି ସଂଗୃହ ହୋଇ ଆସିଲା । ଜଙ୍ଗଲିଆ ଜାଗା, ପତ୍ରସଡ଼ା ଜାଗା ଓ ଅଳିଆ ଗଦା ପ୍ରଭୃତି ବିଭିନ୍ନ ସ୍ଥାନରୁ ମାଟି ମଧ୍ୟ ଅଣାଗଲା । ଏ ସବୁକୁ ଗୋଟିଏ ଜାଗାରେ ରଖି ଠିକଣାଠି ପରୀକ୍ଷା କଲେ । କେବଳ କରିବା ଲୋକ ହିଁ ଏ ସବୁ ପରିଶ୍ରମର ମୂଲ୍ୟ ବୁଝେ । ଅନ୍ୟ କେହି ତାହା ବୁଝିବେ ନାହିଁ । ଦୀର୍ଘ କାଳ ଧରି କଠୋର ସାଧନା ଓ ପରୀକ୍ଷା ଚାଲିଲା । କେବେ ଯେ ସେ ମହାମାନ୍ୟ ବ୍ୟକ୍ତି ଏଥିରୁ ନିବୃତ୍ତ ହେବେ ତାହା ଜଣା ଗଲା ନାହିଁ । ୧୯୨୧ ମସିହାଠାରୁ ୧୯୨୩ ମସିହା ପର୍ଯ୍ୟନ୍ତ ମାଟିର ଜୀବାଣୁଗୁଡ଼ିକ ଗନ୍ଧକ ଉପରେ ପ୍ରଭାବ ବିସ୍ତାର ଓ ୧୯୨୩ ରୁ ୧୯୨୮ ପର୍ଯ୍ୟନ୍ତ ରସାୟନିକ ପ୍ରକ୍ରିୟା ସାହାଯ୍ୟରେ ବିଭିନ୍ନ ମୃତ୍ତିକା ଗୁଡ଼ିକର ବିଶ୍ଳେଷଣ ଚାଲିଲା । ୧୯୨୮ରୁ ୩୬ ମସିହା

ପର୍ଯ୍ୟନ୍ତ ମଧ୍ୟ ଖଡ଼ ମାଟି ଓ ଅନ୍ୟାନ୍ୟ ପସ୍ତସଡ଼ା ଉଦ୍ଭିଦ ବସ୍ତୁବିଶେଷର ପରୀକ୍ଷା କଲେ । ଏହିପରି ବର୍ଷ ବର୍ଷ ଧରି ଓ୍ୟାକ୍‌ସ୍‌ମ୍ୟାନ୍ ଅବିରାମ ଭାବରେ ତାଙ୍କର ଗବେଷଣା କାର୍ଯ୍ୟ ଚଳାଇଲେ ।

ମହାମାନ୍ୟ ଓ୍ୟାକସ୍‌ମ୍ୟାନଙ୍କର ୧୯୩୯ ମସିହାର ଗବେଷଣା ଅତି ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ସେତେବେଳେ ତାଙ୍କର ବୀଜାଣୁ ବିଷ ସମ୍ବନ୍ଧରେ ଗବେଷଣା ଚାଲିଥାଏ । ଆମର କଥାରେ କହନ୍ତି "ବିଷକୁ ବିଷ କାଟେ" । ଏକଥା କେବଳ ମୂର୍ଖ ମହଲରେ ପ୍ରଚଳିତ ହୋଇ ପଡ଼ିଲା ବୈଜ୍ଞାନିକ ଓ୍ୟାକ୍‌ସ୍‌ମ୍ୟାନ୍‌ଙ୍କ ନିକଟରେ । ତେଣୁ ସେଇଠୁ ସେ ଚିନ୍ତା କଲେ ଜୀବନକୁ ବିପନ୍ନ କରୁଥିବା ବୀଜାଣୁକୁ ମାରିବା ପାଇଁ ହେଲେ ଅନ୍ୟ ବୀଜାଣୁଗୁଡ଼ିକର ଅନୁସନ୍ଧାନ ନିଶ୍ଚିତ ଭାବେ କରିବାକୁ ପଡ଼ିବ । ଜଙ୍ଗଲରେ ପଶୁ ଶିକାର ଭଳି ତ ଏକଥା ନୁହେଁ । କେବଳ କୌଶଳ ପ୍ରୟୋଗ କରି ତଥ୍ୟ ସଂଗ୍ରହ କରିବା ହେଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ଏଠାରେ ମନେ ରଖିବାକୁ ହେବ ଯେ, କେବଳ ମନୋବଳ ଦ୍ୱାରା ହିଁ ସେ ଅଧ୍ୟବସାୟର ଫଳ ମିଳେ ତାହା ନୁହେଁ, ମନୋବଳ ସହିତ ଧନବଳ ମଧ୍ୟ ଦରକାର । ଓ୍ୟାକସ୍‌ମ୍ୟାନ ଏହି ଧନବଳ ପାଇବା ପାଇଁ ଓ୍ୟାସିଂଟନ୍‌ରେ ଥିବା ମେଡ଼ିକାଲ ରିସର୍ଚ୍ଚ କମିଟିକୁ ଗୋଟିଏ ଆବେଦନ କଲେ । କିଛିଦିନ ପରେ ସେହି କମିଟି ଉତ୍ତରରେ ଲେଖିଲେ, ବର୍ତ୍ତମାନ ଆମ ଦେଶରେ ଯୁଦ୍ଧ ଚାଲିଛି । ଯୁଦ୍ଧ କ୍ଷେତ୍ରରେ ବିଜୟ ହାସଲ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ସୁତରାଂ ଆପଣଙ୍କର ଗବେଷଣା କାର୍ଯ୍ୟ ଜନହିତକର କାର୍ଯ୍ୟରେ ବର୍ତ୍ତମାନ ପାଇଁ ନିଯୁକ୍ତ ହୋଇ ପାରିବ ନାହିଁ ବୋଲି ସମ୍ଭବ ।

ଉକ୍ତ ପତ୍ର ଖଣ୍ଡି ପାଇ ଯେ ଓ୍ୟାକସ୍‌ମ୍ୟାନ ବିଚଳିତ ହୋଇ ପଡ଼ିଥିବେ ଏକଥା ପ୍ରାୟ ସମସ୍ତେ ଭାବୁଥିବେ । ମାତ୍ର ତାହା ନୁହେଁ, ବରଂ ସେଥିରେ ସେ ବିଚଳିତ ନ ହୋଇ ଦୃଢ଼ତାର ସହିତ ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହେଲେ । ତାଙ୍କର ଏହି ଧୈର୍ଯ୍ୟ ଓ କର୍ମ

ପ୍ରବଣତା ଦେଖି ବହୁତ ବେସରକାରୀ ଅନୁଷ୍ଠାନ ତାଙ୍କୁ ପ୍ରଚୁର ଆର୍ଥିକ ସାହାଯ୍ୟ ଦେଲେ ।

କି କଠୋର ଅଧ୍ୟବସାୟ ! କି କଠୋର ସାଧନା ! ଦିନ ରାତି ତାଙ୍କୁ ମାଲୁମ ନ ଥାଏ । ଚାଲିଛି ତାଙ୍କର ସେହି ମାଟି ଜୀବାଣୁର ସନ୍ଧାନ । କେଉଁ ମାଟିରେ କି ପ୍ରକାର ଜୀବାଣୁ ଅଛନ୍ତି ତାହା ଜାଣିବା ପାଇଁ ମାଟିରେ ପାଣି ଗୋଳାଇ ବାରମ୍ବାର ଗବେଷଣା ଚାଲିଛି । କି ଆଶ୍ଚର୍ଯ୍ୟ ! ମନୁଷ୍ୟର ପୁଣି ଧୈର୍ଯ୍ୟ ଏତେ । ଯେତିକି ଯେତିକି ଗବେଷଣା ଅଧିକ ହେଉଥାଏ ସେତିକି ମନରେ କୃତକାର୍ଯ୍ୟର ଆଶା ସଞ୍ଚାର ହୋଇ ଉଠୁଥାଏ । ତାପରେ ଦଶ ହଜାର ନଳୀ ଆଣି ସେଥିରେ ମାଟି ପାଣି ଉପରୁ ଛାଣି ନିଆଯାଇ ଭର୍ତ୍ତି କରାଗଲା । ତାପରେ ରାସାୟନିକ ପ୍ରକ୍ରିୟାରେ ଗୋଟି ଗୋଟି କରି ଦଶ ହଜାର ନଳୀକୁ ପରୀକ୍ଷା କଲେ । ସେଥିରୁ ଜାଣିଲେ ଯେ, ହଜାରେ ନଳୀ ମଧ୍ୟରେ ଥିବା ପାଣିରେ ବୀଜାଣୁ ନିରୋଧ କରିବାର ଶକ୍ତି ଅଛି । ପୁଣି ସେହି ହଜାରେ ନଳୀକୁ ସେ ପରୀକ୍ଷା କଲେ । ସେଥିରୁ ଶହେଟି ନଳୀରେ ବୀଜାଣୁ ନିରୋଧ କରିବାର ଶକ୍ତି ଥିବାର ସେ ଜାଣିଲେ । ଏହିପରି ପୁନଃ ପୁନଃ ପରୀକ୍ଷା କରି ଶେଷକୁ ଦେଖିଲେ ଯେ ଦଶ ହଜାର ନଳୀରୁ ମାତ୍ର ଦଶ ଗୋଟି ନଳୀରେ ରାସାୟନିକ ପ୍ରକ୍ରିୟା ଦ୍ୱାରା ବୀଜାଣୁ ବିଷକୁ ସଂଗ୍ରହ କରାଯାଇ ପାରିବ । ଏ ପର୍ଯ୍ୟନ୍ତ ସାଧନା ତାଙ୍କର ଚାଲିଛି । କେତେ ଫଳ ମିଳିବ କିଏ ତାହା ଜାଣେ ?

ଏହିପରି କଠୋର ସାଧନା ପରେ ତାଙ୍କର ଦୀର୍ଘଦିନର ଅକ୍ଲାନ୍ତ ପରିଶ୍ରମର ଫଳ ମିଳିଲା ।

ତାର ନାମ ଆକ୍ଟିନୋମାଇସିନ୍ ଓ ତା' ପର ମୁହୂର୍ତ୍ତରେ ପାଇଲେ ଷ୍ଟ୍ରେପ୍ଟୋ ଥ୍ରାଇସିନ୍ । ଏହି ଦୁଇଟି ବୀଜାଣୁ ବିଷର ଆବିଷ୍କାର ସେ କଲେ । ଏଥିରେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ମାତ୍ର ସେ ଦେଖିଲେ ଯେ ଯେଉଁ ଦୁଇଟି ବିଷାକ୍ତ ପଦାର୍ଥ ବାହାରିଲା, ତାହା ଶରୀର ପକ୍ଷେ କ୍ଷତିକାରକ । ସୁତରାଂ କେଉଁଟି ଶରୀର ପକ୍ଷେ ନିରାପଦ

ତାହା ବାହାର କରିବାପାଇଁ ପୁଣି ଗବେଷଣା ଚଳାଇଲେ । ଶେଷକୁ ଆବିଷ୍କୃତ ହେଲ "ଷ୍ଟ୍ରେପ୍ଟୋମାଇସିନ୍" । ଯେ ପର୍ଯ୍ୟନ୍ତ ମନୁଷ୍ୟ ପକ୍ଷେ ତାହା ପ୍ରୟୋଗ ନ ହୋଇଛି ସେ ପର୍ଯ୍ୟନ୍ତ ତାର ଗୁଣ ଜାଣିବା ବଡ଼ କଷ୍ଟକର ।

ତେଣୁ ତକମ୍ଭ ନକର ଏହି ଷ୍ଟ୍ରେପ୍ଟୋମଇସିନ୍ ଗବେଷଣାଗାରରେ ଓ ଚିକିତ୍ସାଳୟମାନଙ୍କରେ ପ୍ରୟୋଗ କରାଗଲା । ଏହାର ଠିକ୍ ଦଶ ବର୍ଷ ପୂର୍ବରୁ ପେନିସିଲିନ୍ ଆବିଷ୍କୃତ ହୋଇଥାଏ । ଏହି ଦୁହିଙ୍କ ମଧ୍ୟରେ କି ପ୍ରକାର ପାର୍ଥକ୍ୟ ଅଛି ତାହା ଜାଣିବା ନିତାନ୍ତ ଆବଶ୍ୟକ । ତାପରେ ଜଣାଗଲା ଯେ ପେନ୍‌ସିଲିନ୍‌ଠାରୁ ଷ୍ଟ୍ରେପ୍ଟୋମାଇସିନ୍‌ର ପ୍ରତିକ୍ରିୟା ଅପେକ୍ଷାକୃତ ବେଶି ।

କ୍ଷୟ ରୋଗ ହେଉଛି ଏକ ଦୁଃସାଧ୍ୟ ରୋଗ । ଏହା ମନୁଷ୍ୟକୁ ଧରିଲେ ସେ ମୃତ୍ୟୁମୁଖରେ ପଡ଼ିବା ସ୍ୱାଭାବିକ । ଏହି ରୋଗରେ ଷ୍ଟ୍ରେପ୍ଟୋମାଇସିନ୍ ପରୀକ୍ଷା କରି ଦେଖାଗଲା ଯେ ତାକୁ ଯେ କୌଣସି ମତେ ଦମନ କରାଯାଇ ପାରିବ । ସୁତରାଂ ସବୁଠାରେ ଏ ରୋଗ ଉପରେ ଷ୍ଟ୍ରେପ୍ଟୋମାଇସିନ୍‌ର ପ୍ରୟୋଗ ଚାଲିଲା । ପୃଥିବୀ ତମାମ ଚହଳ ପଡ଼ିଲା । ଏଥିରେ ୱାକ୍‌ସ୍‌ମ୍ୟାନଙ୍କର ଆନନ୍ଦ ହେବା ସଙ୍ଗେ ସଙ୍ଗେ ସାରା ଦୁନିଆ ତାଙ୍କର ଏହି ଅଭିନବ ଉଦ୍ଭାବନ ପାଇଁ ଆନନ୍ଦରେ ନାଚି ଉଠିଲେ ।

ତାଙ୍କର ଏହି ଉଦ୍ଭାବନ ପାଇଁ ସେ ୧୯୫୨ରେ ନୋବେଲ ପୁରସ୍କାର ପାଇଲେ । ନୋବେଲ ପୁରସ୍କୃତ ହୋଇ ମଧ୍ୟ ୱାକସ୍‌ମ୍ୟାନ୍ ସେଥିରେ ଆନନ୍ଦ ଲାଭକଲେ ନାହିଁ । ତାର ଏକମାତ୍ର କାରଣ ହେଲା, ଷ୍ଟ୍ରେପ୍ଟୋମାଇସିନ୍ ପ୍ରୟୋଗ ଫଳରେ ଶତକଡ଼ା ୭୫ ଜଣ ଭଲ ହେଲେ । କ୍ଷୟରୋଗୀକୁ ପୂର୍ଣ୍ଣମାତ୍ରାରେ ଭଲ କରିବାପାଇଁ ସେ ସବୁବେଳେ ଚିନ୍ତିତ । ଏଥିପାଇଁ ଗବେଷଣା ମଧ୍ୟ ଚାଲିଛି । ପରିଶ୍ରମର ମୂଲ୍ୟ ବା ବୁଝିବ କିଏ ? ଅନ୍ଧକାରରେ ଆଲୋକର ସନ୍ଧାନ ମିଳେ ।

ଅନିଶ୍ଚିତତାରେ ସତ୍ୟର ସନ୍ଧାନ ନିଶ୍ଚିତ, ନୈରାଶ୍ୟ ମଧ୍ୟରେ ଆଶାର ସଞ୍ଚାର ଏହା କଣ ସବୁ କ୍ଷେତ୍ରରେ ସମ୍ଭବ ହୋଇପାରେ ନା ?

ଏହି ଦୁର୍ମୂଲ୍ୟ ଔଷଧ ବାହାର ହେବା ଫଳରେ ପ୍ରଚୁର ଅର୍ଥ ଉପାର୍ଜନ ହେବା ନିଶ୍ଚିତ କଥା । ସୁତରାଂ ଅଳ୍ପଦିନ ମଧ୍ୟରେ ତାଙ୍କ ନିକଟକୁ ପ୍ରଚୁର ଅର୍ଥର ସୁଅ ଛୁଟିଲା । ଓ୍ୟାକସ୍‌ମ୍ୟାନ୍ ଏହି ଉପାର୍ଜିତ ଅର୍ଥରୁ ଗୋଟିଏ ବିରାଟ ଅନୁଷ୍ଠାନ ଗଢ଼ି ପାରିଛନ୍ତି ଷ୍ଟ୍ରେପ୍‌ଟୋମାଇସିନର ଆବିଷ୍କାର ଫଳରେ । ଅବଶେଷରେ ଷ୍ଟ୍ରେପ୍‌ଟୋମାଇସିନ୍ ଉପର ପ୍ରୟୋଗ କରାଯିବା ତାର ଉପଯୁକ୍ତପ୍ରଣାଳୀ ମଧ୍ୟ ବାହାର କରି ପାରିଲେ । ତାଙ୍କର କଠୋର ସାଧନାରେ ଭାଗ ନେଇଥିବା ବନ୍ଧୁ-ମାନଙ୍କୁ ମଧ୍ୟ ବହୁ ଅର୍ଥ ସେ ଦେଇଥିଲେ ଓ ସେମାନଙ୍କୁ ଭୁଲି ଯାଇ ନଥିଲେ । ସେଲମ୍ୟାନ୍ ଅବ୍ରାହମ ଓ୍ୟାକସ୍‌ମ୍ୟାନ୍‌ଙ୍କର ଏହି ଅମର କୀର୍ତ୍ତି ଯୋଗୁ ସେ ବିଶ୍ୱବାସୀଙ୍କର ମନରେ ଚିରଦିନ ପାଇଁ ଅମର ହୋଇ ରହିଛନ୍ତି ।

———




ଅଧିକ ଜ୍ଞାନ ଅର୍ଜ୍ଜନ ନକରି ଆଜିକାଲି ଯୁଗରେ ଏପରି ଅନେକ ବ୍ୟକ୍ତି ଅଛନ୍ତି, ଯେ କି ସାରା ପୃଥିବୀରେ ସେମାନେ ବିଶେଷ ଖ୍ୟାତି ଅର୍ଜ୍ଜନ କରିଛନ୍ତି । ସେମାନଙ୍କର ଅସୀମ ସାହସ, ଧୈର୍ଯ୍ୟ, ବୁଦ୍ଧି ଓ ବିଚକ୍ଷଣତା ଯୋଗୁଁ ତାହା ସମ୍ଭବ ହୋଇ ପାରିଛି । ପୃଥିବୀ ମଧ୍ୟରେ ଖ୍ୟାତି ଅର୍ଜ୍ଜନ କରିଥିବା ସେହି ମହାନ୍ ବ୍ୟକ୍ତିମାନଙ୍କୁ ଆଜି ଦେଶ ତରଫରୁ ସ୍ନେହ ଓ ଶ୍ରଦ୍ଧା ଜ୍ଞାପନ କରାଯାଇଛି । ସେହି ସୁନାମଧନ୍ୟ ବ୍ୟକ୍ତିଜଣକ ହେଉଛନ୍ତି ଆମ ଭାରତର ଦାର୍ଜିଲିଂ ଅଧିବାସୀ ଶେରପା ତେନ୍‌ସିଂ । ସେ କପରି ଓ କେଉଁଠି ଅସୀମ ସାହସ ଏବଂ ବଳପ୍ରୟୋଗ କରି ଆମ ଭାରତ ତଥା ସାରା ପୃଥିବୀରେ ଖ୍ୟାତି ଅର୍ଜ୍ଜନ କଲେ, ସେ ବିଷୟରେ ଏଠାରେ ଉଲ୍ଲେଖ କରାଗଲା ।

ଭାରତ ବର୍ଷର ଉତ୍ତରରେ ପ୍ରାଚୀର ସଦୃଶ ହିମାଳୟ ପର୍ବତ ବିଦ୍ୟମାନ । ଏହାର ସର୍ବୋଚ୍ଚତମ ଶୃଙ୍ଗ ଏଭରେଷ୍ଟ ପୃଥିବୀ ମଧ୍ୟରେ

ଉଚ୍ଚତମ । ଏହାର ଉଚ୍ଚତା ହେଉଛି ୮୮୪୭'୩ ମିଟର । ନେପାଳ ରାଜ୍ୟର ଉତ୍ତର-ସୀମାରେ ଏହି ଶୃଙ୍ଗ ଅବସ୍ଥିତ ।

କେତେକ ଇଉରୋପବାସୀ ପର୍ବତାରୋହୀମାନେ ପୃଥିବୀର ସର୍ବୋଚ୍ଚ ସ୍ଥାନରେ ପଦ ନିକ୍ଷେପ କରିବା ଅଭିଳାଷନେଇ ଅନେକ ଥର ଏଭରେଷ୍ଟ ଅଭିଯାନ କରିଥିଲେ । ମାତ୍ର ତାହା କାର୍ଯ୍ୟରେ ସଫଳ ହୋଇଥିଲା । ଏଥିରେ ଅନେକ ବ୍ୟକ୍ତିଙ୍କର ଜୀବନ ବିପନ୍ନ ହୋଇଥିଲା ଏବଂ ଅନେକ ପ୍ରାଣ ହରାଇଥିଲେ । ତଥାପି ବହୁଲୋକ ପୃଥିବୀର ସର୍ବୋଚ୍ଚ ସ୍ଥାନରେ ପଦାର୍ପଣ କରି ପ୍ରକୃତିର ବିପୁଳ ବିଭବ ଦେଖିବା ପାଇଁ ହିମାଳୟ ଅଭିଯାନ କରି ଆସୁଛନ୍ତି ।

ମନୁଷ୍ୟର ଉଚ୍ଚ ଆଶା ପୋଷଣ କରିବା ସ୍ୱାଭାବିକ । ଏହା ମଧ୍ୟ ଅନେକ କ୍ଷେତ୍ରରେ ସିଦ୍ଧିଲାଭ ହେବାର ଦେଖାଯାଏ ।

ଉଚ୍ଚାଭିଳାଷ ପୋଷଣ କରିବା ବ୍ୟକ୍ତି ଶେରପା ତେନ୍‌ସିଂ ୧୯୫୩ ମସିହା ମେ ମାସ ୨୯ ତାରିଖ ମଧ୍ୟରେ ପୃଥିବୀର ଉଚ୍ଚତମ ଶୃଙ୍ଗ ଏଭରେଷ୍ଟ ଅଭିଯାନ ଆରମ୍ଭ କଲେ । ତାଙ୍କ ସହିତ ସାଥି ହୋଇଥିଲେ ନିଉଜିଲାଣ୍ଡର ଅଧିବାସୀ ଏଡ଼୍‌ମଣ୍ଡ୍ ହିଲାରି ।

ଏଭରେଷ୍ଟ ଶୃଙ୍ଗର ପାଦଦେଶ ସମସ୍ତ ଉଚ୍ଚ ପର୍ବତଶ୍ରେଣୀ ଦ୍ୱାରା ପରିପୂର୍ଣ୍ଣ । ତୁଷାର ନଦୀ ଓ ତୁଷାର କ୍ଷେତ୍ରଦ୍ୱାରା ପରିବେଷ୍ଟିତ ହୋଇ-ଥିବା ଫଳରେ ସେଠାକୁ ଯିବା ଅତ୍ୟନ୍ତ ବିପଜ୍ଜନକ ଓ କଷ୍ଟସାଧ୍ୟ । ସେଠାରେ ଭୟଙ୍କର ଶୀତର ପ୍ରକୋପ । ଶୃଙ୍ଗର ନିମ୍ନଦେଶ ମଧ୍ୟ ଘନୀଭୂତ ତୁଷାରାଚ୍ଛନ୍ନ ଥାଏ । ତୁଷାର କଣା ମିଶ୍ରିତ ଥଣ୍ଡାପବନ, ତୁଷାର ଝଡ଼ ସବୁ ସମୟରେ ପ୍ରବାହିତ ହୁଏ । ଉପଯୁକ୍ତ ଶୀତବସ୍ତ୍ରର ଅଭାବ ହେଲେ ଶରୀର ଖୁବ୍ ଅଳ୍ପ ସମୟ ମଧ୍ୟରେ ଥଣ୍ଡା ହୋଇଯାଏ । ଖୁବ୍ ତୀକ୍ଷ୍ଣ ତୁଷାରାଚ୍ଛନ୍ନ ପର୍ବତପାର୍ଶ୍ୱରେ ଯଦି ପାଦ ଖସିଯାଏ ତେବେ ମୃତ୍ୟୁ ଅନିର୍ବାର୍ଯ୍ୟ । ଖୁବ୍ ବଡ଼ ବଡ଼ ବରଫ ଗର୍ତ୍ତ ମଧ୍ୟରେ ଯଦି ଗୋଡ଼ ଖସେ ତେବେ ପ୍ରାଣନାଶର ସ୍ପଷ୍ଟ ଆଶଙ୍କା ଥାଏ । ଏ ସମସ୍ତ ବିପଦରୁ ରକ୍ଷା ପାଇବାକୁ ହେଲେ ଉପରକୁ ଉଠିବାପାଇଁ ଆରୋହୀମାନେ

ପରସ୍ପର କଟି ଦେଶକୁ ଏକ ଦଉଡ଼ିଦ୍ୱାରା ବାନ୍ଧି ଦେଇଥାନ୍ତି । ଏହାଛଡ଼ା ସେମାନେ ଦଉଡ଼ି ସାହାଯ୍ୟରେ ସିଡ଼ି ନିର୍ମାଣ କରି ତା ଉପରକୁ ଉଠନ୍ତି । ସେଠାକାର ଉପର ଅଂଶରେ ବାୟୁମଣ୍ଡଳ ନମଣ ପତଳା ଥାଏ । ତନ୍ମଧ୍ୟରେ ଅମ୍ଳଜାନ ଭାଗ ଖୁବ୍ କମ୍ ଥିବା ହେତୁ ନିଶ୍ୱାସ ପ୍ରଶ୍ୱାସ ନେବାରେ ବିଶେଷ କଷ୍ଟ ହେବାର ଜଣାପଡ଼େ । ସମୟ ପଡ଼ିଲେ ଅମ୍ଳଜାନର ଅଭାବ ଦୃଷ୍ଟିରୁ ମନୁଷ୍ୟର ମୃତ୍ୟୁ ସୁନିଶ୍ଚିତ । ତେଣୁ ଆରୋହୀ-ମାନେ ଅମ୍ଳଜାନ ପୂର୍ଣ୍ଣ ଥଳି ସଙ୍ଗରେ ନେଇଥାନ୍ତି । ଏହି ବସ୍ତୁ ଥଳିଟିକୁ ପିଠିରେ ବାନ୍ଧିକରି ନେବା ଅତ୍ୟନ୍ତ କଷ୍ଟକର । ଆଉ ପୁଣି ସୂର୍ଯ୍ୟଙ୍କର ଉଜ୍ଜ୍ୱଳ ରଶ୍ମି ବରଫ ଉପରେ ପ୍ରତିଫଳିତ ହେବା ଫଳରେ ଆଖି ଝଲସି ଉଠେ । ଏହା ଦୃଷ୍ଟିଶକ୍ତି ପକ୍ଷେ ଏତେ କ୍ଷତିକାରକ ଯେ ସମୟେ ସମୟେ କେତେକ ମଧ୍ୟ ଅନ୍ଧହୋଇ ଯାଆନ୍ତି ।

ଏଭରେଷ୍ଟ ଶୃଙ୍ଗ ଉପରେ ଆରୋହଣ କରିବା ପାଇଁ ବର୍ଷ ମଧ୍ୟରେ ୨ । ୩ ମାସ ଅନୁକୂଳ ସମୟ । ଶୀତଋତୁ ପରେ ଓ ବର୍ଷାଋତୁ ପୂର୍ବରୁ ଏହାର ଭିତରେ ଅଭିଯାତ୍ରୀମାନେ ତାଙ୍କର ଯାତ୍ରା ଶେଷ କରି ଥାଆନ୍ତି । ଶୀତଦିନେ ପ୍ରବଳ ତୁଷାରପାତ ଓ ବର୍ଷାକାଳର ମୌସୁମୀବାୟୁ ଜନିତ ଝଡ଼ ହେବା ଯୋଗୁ ଆରୋହଣକାରୀମାନେ ସେଠାରେ ବିଶେଷ କଷ୍ଟ ଅନୁଭବ କରନ୍ତି ।

ମନୁଷ୍ୟର ଉଚ୍ଚ ଆକାଂକ୍ଷା ସହିତ ସାହସ ଓ ମନୋବଳ ଥିବା ଏକାନ୍ତ ଆବଶ୍ୟକ । ଯେଉଁ ବୀରପୁରୁଷମାନେ ଅତି ସାହସର ସହିତ ଏହି ଦୁର୍ଗମପଥ ଅତିକ୍ରମ କରି ବାରମ୍ବାର ଅଭିଯାନ ଚଳାଇଥିଲେ ସେମାନଙ୍କ ବିଷୟରେ ଏଠାରେ ସଂକ୍ଷେପରେ କୁହାଗଲା ।

୧୯୨୧ ଖ୍ରୀଷ୍ଟାବ୍ଦ ମେ ମାସ ୧୮ ତାରିଖରେ କର୍ଣ୍ଣେଲ ବ୍ରେଉ ଅଭିଯାନର ନେତୃତ୍ୱ ନେଇ ଏଭରେଷ୍ଟ ଅଭିଯାନ ଆରମ୍ଭ କଲେ । ସେ ଚସକର, ଡାକ୍ତର ବ୍ରୁଲ୍ଟଙ୍କୁ ସଙ୍ଗରେ ନେଇଥିଲେ । ତିବ୍ବତ ସୀମାରୁ ଶୃଙ୍ଗ ଆରୋହଣ କରିବା ସହଜ ମନେ କରି ଦାର୍ଜିଲିଂରୁ ତିବ୍ବତ ଅଭିମୁଖେ ତାଙ୍କର ଯାତ୍ରା ଆରମ୍ଭ ହେଲା । ସେମାନେ ୬୯୦ ମିଟର

ଉଚ୍ଚତା ପର୍ଯ୍ୟନ୍ତ ଉଠି ସେଠାରେ ତମ୍ବୁ ସ୍ଥାପନ କଲେ । ମାତ୍ର ପ୍ରବଳ ତୁଷାର ଝଡ଼ ହେବାରୁ ସେମାନେ ବାଧ୍ୟ ହୋଇ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ । ମାତ୍ର କର୍ଣ୍ଣେଲ ହ୍ୱେଣ୍ଟ ତାଙ୍କର ଅଭିଯାନ କାଳରେ ଏଭରେଷ୍ଟ ଶୃଙ୍ଗର ମାନଚିତ୍ର ଓ କେତେକ ମୂଲ୍ୟବାନ ତଥ୍ୟମାନ ସଂଗ୍ରହ କରି ପାରିଥିଲେ ।

ଦ୍ୱିତୀୟ ଥର ପାଇଁ ଜେନେରାଲ ବ୍ରୁସ୍‌ଙ୍କ ଅଧ୍ୟକ୍ଷତାରେ ୧୯୨୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ କେତେକ ଘୋଡ଼ା ଓ ଚମରୀ ଗାଈଙ୍କ ପିଠିରେ ବୋଝ ଲଦି ଅଭିଯାନ ଆରମ୍ଭ କଲେ । ଏଥର ସେ କେତେକ ପାର୍ବତ୍ୟ ଅଧିବାସୀଙ୍କୁ ସଙ୍ଗରେ ନେଇଥିଲେ । ମ୍ୟାଲେରି, ନର୍ଟନ ଏ ଦୁଇଜଣ ସଙ୍ଗୀଙ୍କୁ ସଙ୍ଗରେ ଧରି ୮୧୭୦୦·୫ ମିଟର ଉଚ୍ଚକୁ ଉଠିଥିଲେ । ମାତ୍ର ସେମାନେ କ୍ଳାନ୍ତ ହୋଇ ପଡ଼ିବା ସଙ୍ଗେ ସଙ୍ଗେ ମୌସୁମୀ ବାୟୁର ପ୍ରବାହ ଆରମ୍ଭ ହେବାରୁ ସେମାନଙ୍କର ଅଭିଯାନ ସେଠାରୁ ସ୍ଥଗିତ ରହିଲା ।

ମନୁଷ୍ୟର ସାହସ ତ କିଛି କମ୍ ନୁହେଁ । ତେଣୁ ବାରମ୍ବାର ଚେଷ୍ଟା ଚଳାଇଲା କିପରି ସେ ଏଭରେଷ୍ଟକୁ ଜୟ କରିବ, ପୁନଶ୍ଚ ୧୯୨୪ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଆରମ୍ଭ ହେଲା ତୃତୀୟ ଅଭିଯାନ । ଏଥର ପୁଣି ବ୍ରୁସ୍ ଏହି ଅଭିଯାନର ନେତା ହେଲେ ଏବଂ ସଙ୍ଗରେ ମ୍ୟାଲେରି, ସମରଭେଲ୍ ଓ ନର୍ଟନ ରହିଲେ । ନର୍ଟନ ଦଳର ନେତୃତ୍ୱ ନେଲେ । ଏଥର ଏମାନେ ୮୫୩୭·୮ ମିଟର ଉଚ୍ଚତାରେ ଉପସ୍ଥିତ ହେଲେ । ସେ ପର୍ଯ୍ୟନ୍ତ ଏତେ ଉଚ୍ଚତାକୁ କେହି ଉଠିପାରି ନ ଥିଲେ । ଏହି ଅଭିଯାନରେ ସମରଭେଲ୍ ସନ୍ନିପାତ ନର୍ଟନ ଅନ୍ଧ ହୋଇଗଲେ । ମ୍ୟାଲେରି ଓ ଆରଭିନ୍ ଅମ୍ଳଜାନପୂର୍ଣ୍ଣ ଥଳୀ ସଙ୍ଗରେ ନେଇଥିବାରୁ ସେମାନଙ୍କ ଅପେକ୍ଷା ଅଧିକ ବୀରତ୍ୱ ଦେଖାଇ ଶେଷରେ ପ୍ରାଣ ହରାଇଥିଲେ । ଏଥର ଏଭରେଷ୍ଟ ଅଜେୟ ବୋଲି ପ୍ରମାଣ ହେଲା । ତୁମେ ଆଶ୍ଚର୍ଯ୍ୟ ହେବ ଯେ ମନୁଷ୍ୟର ସାହସ ଓ ଧୈର୍ଯ୍ୟ କେତେଦୂର ସେ ଜାଣି ଶୁଣି ମରଣକୁ ବରଣ କରି ସେ ସେଥିରୁ ନିବୃତ୍ତି ନ ହୋଇ ପୁଣି ଚତୁର୍ଥ ଥର ପାଇଁ ଅଭିଯାନ ଚଳାଇଲେ ।

ଏଥର ଲୁଟ୍‌ଲେଜ୍ ହେଲେ ଅଭିଯାନର ଦଳପତି । ଏଥର ଆରୋହୀମାନେ ବହୁ ବାଧାବିଘ୍ନ ସତ୍ତ୍ୱେ ୮୫୩୦ ମିଟର ଉଚ୍ଚରେ ପହଞ୍ଚିଲେ ।

୧୯୩୬ ଓ ୧୯୩୮ ଖ୍ରୀଷ୍ଟାବ୍ଦରେ ପୁଣି ଅଭିଯାନ ଆରମ୍ଭ ହେଲା । ଏଥର ସେମାନଙ୍କର ଶରୀର ଅସୁସ୍ଥ ହେବାରୁ ଅଭିଯାନରେ ବାଧା ସୃଷ୍ଟି ହେଲା । ସେମାନେ ବାଧ୍ୟ ହୋଇ ପ୍ରତ୍ୟାବର୍ତ୍ତନ କଲେ । ଏଥର ଏ ଅଭିଯାନରେ ଉଲ୍ଲେଖଯୋଗ୍ୟ ଖବର ସେପରି କିଛି ନଥିଲା ।

୧୯୫୨ ଖ୍ରୀଷ୍ଟାବ୍ଦରେ ବସନ୍ତକାଳ ପ୍ରାରମ୍ଭରେ ପୁନର୍ବାର ଆରମ୍ଭ ହେଲା ଅଭିଯାନ । ଏଥର ସାର୍ଝ୍ ସୁଇଜରଲାଣ୍ଡର ଦଳେ ଅଭିଯାନକାରୀଙ୍କୁ ସଙ୍ଗରେ ଧରି ଏଡଉଆର୍ଡ ୱାଇସ୍‌ଡନ୍ ନେତୃତ୍ୱ ଗ୍ରହଣକରି ଅଭିଯାନ ପଥରେ ଚାଲିଲେ । ତୁମ୍ଭର ମନେ ହେଉଥିବ ଯେ ଏଭରେଷ୍ଟ ଏଥର ଏମାନଙ୍କ ନିକଟରେ ଦାସତ୍ୱ ସ୍ୱୀକାର ନିଶ୍ଚୟ କରିବ । ମାତ୍ର ପରିତାପର ବିଷୟ ଯେ ଅଭିଯାନକାରୀମାନେ ବିପଦକୁ ବରଣ କରି ପ୍ରବଳ ତୁଷାର ଝଡ଼ର ସମ୍ମୁଖୀନ ହୋଇ ୮୫୭୮.୨ ମିଟର ଶୃଙ୍ଗ ଉପରେ ଶିବିର ସ୍ଥାପନ କରି ପାରିଥିଲେ । ଏଥର ପୁଣି ପ୍ରବଳ ତୁଷାରଝଡ଼ ଏତେ ଅଧିକ ହେଲା ଯେ ଭବିଷ୍ୟତରେ ସେମାନଙ୍କ-ଜୀବନ ବିପନ୍ନ ହେବା ଆଶଙ୍କା ପୋଷଣ କରି ସେହିସ୍ଥାନରୁ ପ୍ରତ୍ୟାବର୍ତ୍ତନ କଲେ । ଏ ଅଭିଯାନ ମଧ୍ୟ ଶେଷରେ ବିଫଳ ହେଲା ।

ମନୁଷ୍ୟର ପ୍ରବୃତ୍ତିକୁ ଅନ୍ୟ ପକ୍ଷରେ ରୋକିବା ଅସମ୍ଭବ । ଏଭରେଷ୍ଟ ଅଜେୟ ବୋଲି ପ୍ରତିପନ୍ନ ନ ହେଲେ ମଧ୍ୟ ପୃଥିବୀର ସର୍ବୋଚ୍ଚ ଶିଖର ଦେଶରେ ପଦାର୍ପଣ କରିବାର ବାସନା ସେ ପର୍ଯ୍ୟନ୍ତ ମନୁଷ୍ୟ କେବେ ତ୍ୟାଗ ନଥିଲା । ପୁଣି ୧୯୫୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୧୦ ତାରିଖରେ ଏକ ଅଭିଯାନକାରୀଦଳ ଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇ ଏଭେରେଷ୍ଟ ଶୃଙ୍ଗକୁ ଜୟ କରିବାପାଇଁ ବାହାରିଲେ । ଏହି ଦଳର ନେତା ହେଲେ ସାରଜନ୍ ହଣ୍ଟ୍ । ଏହି ଦଳରେ ମଧ୍ୟ ଥିଲେ, ତେନ୍‌ସିଙ୍ଗ

ନେପାଳବାସୀ ଆମ ଭାରତର ଅମର ସନ୍ତାନ ତେନ୍‌ସିଂ ନୋରଗା ଓ ଏଡ଼ମଣ୍ଡ ହିଲାରୀ । ତେନ୍‌ସିଂ ସେରପାଙ୍କର ପ୍ରଧାନ ଅସ୍ତ୍ର ସ୍ୱରୂପ ହାତରେ ଥାଏ ଅମ୍ଳଜାନ ଯନ୍ତ୍ରଟିଏ ଓ ଖଣ୍ଡେ ବରଫକଟା କୁରାଢ଼ୀ । “ଜୟ କରିବ ନୋହିଲେ ମରିବ” ଏହି ବ୍ରତ ସେ ପାଳନକରି ଏଭରେଷ୍ଟ ଅଭିଯାନରେ ଆଗେଇଥିଲେ ।

ଦୁର୍ଗମ ତୁଷାରବୃତ ପାହାଡ଼ ଅତିକ୍ରମ କରି ଉପରକୁ ଉଠିବା ଯେ କେଡ଼େ କଷ୍ଟ, ତାହା ଅନୁଭବ ବିନା କେହି ବୁଝି ପାରିବ ନାହିଁ । ତେନ୍‌ସିଂ ଅଧିକ ଅମ୍ଳଜାନର ଅଭାବରୁ ସେଠାରେ ବଡ଼ କଷ୍ଟ ପାଇଲେ । ତଥାପି ଧୈର୍ଯ୍ୟ ନହରାଇ ସାହସ ବାନ୍ଧି ଏବଂ ବଳ ପ୍ରୟୋଗ କରି ସେହି ବରଫ ଭିତରେ ୮୦ଟି ପାହାଚ କୁରାଢ଼ିଦ୍ୱାରା କାଟି ଉପରକୁ ଉଠିଲେ ।

କିଛିଦୂର ଅତିକ୍ରମ କଲାପରେ ସ୍ୱର ଆଡ଼ର ବରଫ ପାହାଡ଼ ତାଙ୍କ ମୁଣ୍ଡ ଉପରେ ପାଚେରି ସଦୃଶ ଦିଶିଲା । ତାକୁ ଗୋଟିଏ ଅନ୍ଧାକୂଅ ପରି ବୋଲି ସେ ମନେ କଲେ । ତାଙ୍କୁ କିଛି ଦିଶିଲା ନାହିଁ । ଜୀବନ ଯେ ତାଙ୍କର ରହିବ, ଏ ଆଶା କୁଆଡ଼େ ଉଭେଇ ଗଲା । ତାର ପ୍ରଧାନ କାରଣ ହେଲା ଆଉ ମାତ୍ର ଦୁଇଘଣ୍ଟା ପରେ ସେମାନଙ୍କର ନିକଟରେ ଥିବା ଅମ୍ଳଜାନ ସରିଯିବ । ଏହି ନିରାଶା ମଧ୍ୟରେ ଥାଇ ପୁନର୍ବାର ପାହାଚ ତିଆରି କରିବାରେ ଚେଷ୍ଟା କରା-ଗଲା । ସେତେବେଳେ ସେ ବିବ୍ରତ ନହୋଇ ପୁଣି ସାହସର ସହିତ ଦୁଇ ସ୍ୱରେଷ୍ଟି ପାହାଚ କାଟିବାରେ ସେ ସମର୍ଥ ହୋଇ ପାରିଲେ, ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ।

ପାହାଚ ସ୍ୱରେଷ୍ଟି କାଟିବାପରେ ବିଳମ୍ବ ନକରି ଉଭୟେ ତା ଉପରେ ଚଢ଼ି ଖୁବ୍ କଷ୍ଟରେ ଉପରକୁ ଉଠି ଦେଖିଲେ ସ୍ୱରଆଡ଼ ସମତଳ । ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ତେନ୍‌ସିଂ ଧାଇଁ ଯାଇ ଆନନ୍ଦରେ ଏଡ଼ମଣ୍ଡ ହିଲାରୀଙ୍କ ସହିତ କର ମର୍ଦ୍ଦନ କଲେ । ଦୁହେଁ ଦୁହିଙ୍କୁ ଆଲିଙ୍ଗନ କରି ଆନନ୍ଦରେ ଅସ୍ଥିର

ବିଶ୍ରାମ ଗଲେ । ସେହି ଆନନ୍ଦ ମଧ୍ୟରେ ଦୁଃସାଧ୍ୟ ଅଭିଯାନର ଲକ୍ଷ୍ୟ ଏଭରେଷ୍ଟ ଶୃଙ୍ଗ, ସେ କ୍ଷେତ୍ରରେ ତାଙ୍କୁ ବୁଝିବାରେ ଆଉ ବିଳମ୍ବ ହେଲା ନାହିଁ । ଟେନ୍‌ସିଂ ସେଠାରେ ଆମ ଭାରତର ଜାତୀୟ ପତାକା ଗର୍ବର ସନ୍ଧତ ଉଡ଼ାଇଲେ । ହିଲାରୀ ସେଠାରେ କ୍ୟାମେରାରେ ତାଙ୍କ ଫଟୋ ଉଠାଇଲେ ।



୧୯୫୩ ମସିହା ମେ ମାସ ୨୯ ତାରିଖ ପୂର୍ବାହ୍ଣ ୧୧ ଘଣ୍ଟା ୩୦ ମିନିଟ୍ ସମୟରେ "ଏଭରେଷ୍ଟ ଶୃଙ୍ଗ ସେମାନଙ୍କର ଦାସତ୍ୱ ସ୍ୱୀକାର କଲା ।" ମାତ୍ର ସେତେବେଳେ ସେମାନେ ମନରେ ସୁଖ ଅନୁଭବ କରି ନ ଥିଲେ । ଯେତେବେଳେ ଉଭୟେ ତାଙ୍କର ସର୍ବନିମ୍ନ ତମ୍ବୁକୁ ଓହ୍ଲାଇ ଆସିଲେ ଦେଖିଲେ ଯେ, ସେଠାରେ ସମସ୍ତେ ନାଚପଦରେ ରହିଛନ୍ତି । ଟେନ୍‌ସିଂ ଆନନ୍ଦାଶ୍ରୁ ନୟନରେ ହଣ୍ଟ୍‌କୁ କୁଣ୍ଢାଇ ପକାଇଲେ ।

ଅଜେୟ ଏଭରେଷ୍ଟ ଶୃଙ୍ଗକୁ ଜୟ କରି ଟେନ୍‌ସିଂ ଓ ହିଲାରୀ ପୃଥିବୀରେ ଯେଉଁ ଅକ୍ଷୟକୀର୍ତ୍ତି ଅର୍ଜନ କଲେ ସେଥିଲାଗି ପୃଥିବୀବାସୀ ତାଙ୍କୁ ଚିରଦିନ ଲାଗି ଯେ ମନେ ରଖିବେ ଏଥିରେ ସନ୍ଦେହ ନାହିଁ ।

ସେମାନେ ବିପୁଳ ବିଜୟ ଓ ସଫଳତା ହାସଲ କରିଥିବା ସ୍ଥୋଗ୍ରେ ପୃଥିବୀର କୌଣସି ଦେଶ ନାହିଁ ଯେ କି ତାଙ୍କୁ ପ୍ରଶଂସା ଓ ପୁରସ୍କାର ନ ଦେଇ ରହି ପାରିଛି ।

ଜଣେ ଭାରତୀୟ ପକ୍ଷେ ପୃଥିବୀର ସର୍ବୋଚ୍ଚତମ ସ୍ଥାନରେ ପଦାର୍ପଣ କରିବା ଯେ କେତେ ବଡ଼ ସୌଭାଗ୍ୟର ବିଷୟ, ତାହା ଭାରତର ପ୍ରତ୍ୟେକ ନାଗରିକ ଗର୍ବ ଅନୁଭବ କରିବାର କଥା ।

---